## ମୁଖଶାଳା—

ଓଡ଼ିଆ-'କବିତା-କଳା' ବିଚିତ୍ରବର୍ଣ୍ଣା । ବିଭିନ୍ନ ପରିସ୍ଥିତି ଓ ପରିବେଶର ପରିବର୍ତ୍ତନ ସହ ସମତାଳରେ ଗତି କରି, ଯୁଗଧର୍ମର ପ୍ରଭାବ ଓ ପ୍ରେରଣାକୁ ପ୍ରାଣରେ ବହନକରି, ବହୁ ସାଧକ ରସିକଙ୍କର ଓ ଭାବଚେତନାର ପ୍ରତୀକ ରୂପେ ଏହା ଯୁଗେ ଯୁଗେ ପ୍ରତିଭାତ । ସାରସ୍ୱତ ରସବୋଧ, ଦିବ୍ୟଚେତନା, କମନୀୟ-କଳାପ୍ରାଣତା, ସମାଜ ତଥା ବ୍ୟକ୍ତି ପ୍ରାଣର ଉଚ୍ଛ୍ୱସିତ ଆବେଗ ଓ ଅନୁଭୂତି ଏଥିରେ ଅନ୍ତରଂଗ ଭାବେ ପ୍ରତିଫଳିତ । ଯୁଗରୀତି ଓ ଲୋକରୁଚିର ପରିବର୍ତ୍ତନ, ଏଥିରେ ମୁଦ୍ରାଙ୍କିତ । ଏହି କାବ୍ୟଧାରା ହିଁ ଯଥାର୍ଥରେ ଉତ୍କଳୀୟ ଶାଶ୍ୱତ ଜୀବନଧାରାର ଏକ ସ୍ୱଚ୍ଛନ୍ଦ ଓ ସାର୍ଥକ ପରିପ୍ରକାଶ । ଶଂସିତ ସଙ୍କଳନ "କବିତା-କଳା"ରେ ଏହାର ଏକ ପ୍ରତିନିଧିମୂଳକ ଚିତ୍ର ଉପସ୍ଥାପନ କରିବାର ପ୍ରୟାସ କରାଯାଉଛି । ଏହି ଉଦ୍ୟମର ସାର୍ଥକ ରୂପାୟନରେ ସହଯୋଗ କରିଥିବା ସାଂପ୍ରତିକ କାଳର ବରେଣ୍ୟ କବିମାନଙ୍କୁ ତଥା ସ୍ୱର୍ଗତ କବିମାନଙ୍କର ଉତ୍ତରାଧିକାରୀଗଣଙ୍କୁ ମୁଁ ଆନ୍ତରିକ କୃତଜ୍ଞତା ଜଣାଉଛି ।

ଓଡ଼ିଆ କାବ୍ୟ-ତଟିନୀ 'ବୌଦ୍ଧଗାନ ଓ ଦୋହା' ଯୁଗୀୟ 'ଉଁଚା ଉଁଚା ପାବତ'ରୁ ବାହାରି 'ବିତଳକୁ ଆଲିଙ୍ଗନ' କରି 'ଉଚ୍ଛିନ୍ନ ରତି ହମାନ' ପ୍ରବାହିତ । ଏହା 'ଅଶେଷ ରସରେ ପୂରିତ' । କେତେବେଳେ ଏହା 'ଦୃଶଦ୍‌ବିଖରୂପେ ଇର୍କ୍ଷିରୀ ମୁଖରୀ'ତ, କେଉଁଠି ଏହା 'ନୀଳ-ନୀରମ୍ବର ସୈକତିନୀ' । ଏହାର ତୀରେ ତୀରେ କେତେ ଦୃଶ୍ୟ ଓ ରସର ସମାବେଶ ଓ ସମାହାର । କେଉଁଠି ଏହା ରୁଧିରସିକ୍ତ ମହାଭାରତୀୟ ରଣପ୍ରାଙ୍ଗଣ ତ, କେଉଁଠି ଏହା ଶାରଦୀୟ ଜ୍ୟୋତ୍ସ୍ନାସ୍ନାତ ହଗୀତ-ମୁଖରିତ ଲୀଳାଭୂମି ଦେଇ ବୋହିଯାଇଛି । କେଉଁଠି ଏହା ଦେଖିଛି, ପ୍ରଣୟ-ବିମୁଖା ନାରୀର ଆତ୍ମରକ୍ଷାକାଳୀନ ଆତ୍ମବିସର୍ଜନ ତ କେଉଁଠି ଦେଖିଛି ପ୍ରଣୟ-ପାଗଳିନୀ ରୂପସୀ କିଶୋରୀର ଆତ୍ମହତ୍ୟା । ପୁଣି କେଉଁଠି ଜାତିର ଗୌରବ ରକ୍ଷା ପାଇଁ ଦ୍ୱାଦଶବର୍ଷୀୟ ବାଳକର ଅଭୂତପୂର୍ବ ଆତ୍ମୋତ୍ସର୍ଗର ମହନୀୟ ଦୃଶ୍ୟ । ବିକରାଳ ଶ୍ମଶାନର ତୀର ଆଉ କାରୁ-କଳା-ଦୀପ୍ତ ମନ୍ଦିରର ବା 'ବୀର ରକ୍ତ ପିଣ୍ଡେ' ଗଠିତ ଦୁର୍ଗର ଧାରେ ଧାରେ ଏହା ଗତି କରି ଚାଲିଛି, ସତ୍ୟ ଶିବ ସୁନ୍ଦରର ସନ୍ଧାନରେ । ଏହା ଯୁଗ ଯୁଗ ବ୍ୟାପି ଅଗଣିତ ଜନଗଣର ଚିରନ୍ତନ ଜୟଗାନ । ପ୍ରାଚୀନ ଓ ମଧ୍ୟଯୁଗର ଭିକ୍ଷୁକ ସନ୍ନ୍ୟାସୀଠାରୁ ଆରମ୍ଭ କରି ମହାରାଜା ଓ ରାଜପୁତ୍ର ପର୍ଯ୍ୟନ୍ତ, ଆଧୁନିକଯୁଗର ଅନ୍ଧକାର-କାରାକକ୍ଷର ଅସହାୟ ବନ୍ଦୀଠାରୁ ଆରମ୍ଭକରି ରାଜ୍ୟପାଳ ଓ ବାଚସ୍ପତିଙ୍କ ପର୍ଯ୍ୟନ୍ତ, ସମାଜର ପ୍ରତ୍ୟେକ ସ୍ତରର ବ୍ୟକ୍ତିର ଅବଦାନରେ ଏହା ପରିପୂର୍ଣ୍ଣ ଓ ପରିପୁଷ୍ଟ । ତା' ଛଡ଼ା

ଅନ୍ଧ କବି, କୁଷ୍ଠୀ କୈବର୍ତ୍ତ, ଗଉଡ଼, ବଢ଼େଇ, ଏପରିକି ପ୍ରୋଷିତଭର୍ତ୍ତୃକା ନାରୀ ପର୍ଯ୍ୟନ୍ତ ଏ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ ଓ ରସମୟ କରିଯାଇଛନ୍ତି । ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ଜୈନ, ବୌଦ୍ଧ, ଶୈବ, ଶାକ୍ତ, ତାନ୍ତ୍ରିକ, ବୈଷ୍ଣବ, ବ୍ରାହ୍ମ ଓ ଶୂନ୍ୟବାଦୀ ଅଲେଖପନ୍ଥୀ, ବ୍ରହ୍ମତେଜୋଦ୍ଦୀପ୍ତ ସିଦ୍ଧପୁରୁଷ, ଛିନ୍ନକନ୍ଥା ପରିହିତ ଭିକ୍ଷୁକ, ପୁରପଲ୍ଲୀର ଅଗଣିତ ଅଜ୍ଞେୟ ଅପରିଚିତ ଲୋକ କବିଙ୍କଠାରୁ ସମରପ୍ରତ୍ୟାବୃତ୍ତ ରୁଗ୍ଣ ବିଧର୍ମୀ ମୁସଲମାନ ଓ ଧର୍ମାନ୍ତରିତ ଖ୍ରୀଷ୍ଟିୟାନ୍ ପର୍ଯ୍ୟନ୍ତ ଏ ସାହିତ୍ୟକୁ କାବ୍ୟକଳାର କମନୀୟ ବିଭବରେ ମଣ୍ଡିତ କରିଯାଇ ଅଛନ୍ତି ।

ଶୂଦ୍ରମୁନି ସାରଳାଦାସ ଓଡ଼ିଆ ସାହିତ୍ୟର ଆଦିକବି । ତାଙ୍କ ପୂର୍ବରୁ ବିଭିନ୍ନ ସନନ୍ଦ ଓ ଶିଳାଲେଖରୁ ଏବଂ ବିଚ୍ଛାଦାସଙ୍କ କଳସା ଓ ନାରାୟଣାନନ୍ଦ ଅବଧୂତସ୍ୱାମୀଙ୍କ 'ରୁଦ୍ରସୁଧାନିଧି' ଗ୍ରନ୍ଥରୁ ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ମେଷ ସମ୍ପର୍କରେ ସୂଚନା ମିଳିଥିଲେ ହେଁ, ଏହାର ପରିପୂର୍ତ୍ତି ବିକାଶ ଘଟିଲି ସାରଳାଦାସଙ୍କ ଲେଖନୀ ମୂନରେ । ସଂସ୍କୃତ-ଅଭିମାନୀ ରାଜାନୁଗ୍ରହପୁଷ୍ଟ ପଣ୍ଡିତମଣ୍ଡଳୀର ପ୍ରବଳ ପ୍ରତିରୋଧ ସତ୍ତ୍ୱେ, ସାଧାରଣ ଜାନପଦ ଭାଷାରେ ସାରଳାଦାସ ରଚନା କଲେ ବିରାଟ ମହାଭାରତ ଗ୍ରନ୍ଥ, ଚଣ୍ଡୀପୁରାଣ, ବିଲଙ୍କାରାମାୟଣ ପ୍ରଭୃତି । ଏହା ପୁରାଣପରମ୍ପରାର ଯୁଗ । ରାମଲୀଳା, ଶିବପାର୍ବତୀ, ଶ୍ରୀକୃଷ୍ଣ-ସତ୍ୟଭାମା ପ୍ରଭୃତି ଅଲୌକିକ ଶକ୍ତିସମ୍ପନ୍ନ ଦେବଦେବୀମାନଙ୍କର ମହିମାମଣ୍ଡିତ ଜୀବନର ଲୀଳାଖେଳା ହିଁ ଏ ଯୁଗୀୟ କାବ୍ୟକବିତାର ମୁଖ୍ୟ ଉପଜୀବ୍ୟ । ଫଳରେ ମୂଳ ସଂସ୍କୃତ ସାହିତ୍ୟ ବର୍ଣ୍ଣିତ ବିଭିନ୍ନ ଚରିତ୍ରମାନଙ୍କର ସର୍ବଭାରତୀୟ ଭାବମୂର୍ତ୍ତି ସହ ଉତ୍କଳୀୟ ଦେଶପ୍ରୀତିର ଚମତ୍କାର ସମନ୍ୱୟ ଘଟିଲି ସାରଳାଙ୍କ ସାହିତ୍ୟରେ । ସେ ବ୍ୟାସଦେବଙ୍କର ଅନ୍ଧ ଅନୁବାଦକ ବା ଅନୁସରକ ନୁହନ୍ତି, ନିଜେ ଜଣେ ଶକ୍ତିଶାଳୀ ସ୍ରଷ୍ଟା । ବହୁ ଲୋକକଥା, ଜନଶ୍ରୁତି ଓ ଆଞ୍ଚଳିକ ଉପାଖ୍ୟାନର ସଂଯୋଗରେ ସାରଳା-ମହାଭାରତ ଏକ ଅଭିନବ ଅନବଦ୍ୟ ସୃଷ୍ଟି ।

ତାଙ୍କ ପରେ ପରେ ଓଡ଼ିଶାରେ ତାଳପତ୍ର ପୋଥି ଲେଖାର ସ୍ରୋତ ଅବାରିତ ଗତିରେ ଛୁଟି ଚାଲିଲା । ପ୍ରାକୃତ ଭାଷାରେ ରଚିତ ହେଲା ରାଶି ରାଶି ଧର୍ମପୁରାଣ ଗ୍ରନ୍ଥ, ଚଉତିଶା, ଭଜନ ଓ ଜଣାଣ ସାହିତ୍ୟ । ଓଡ଼ିଆ ଭାଷା, ଲିପି ଓ ସାହିତ୍ୟ ଧୀରେ ଧୀରେ ବିବର୍ତ୍ତିତ, ବିକଶିତ ଓ ବିଭବ ମଣ୍ଡିତ ହୋଇ ଉଠିଲା; ପ୍ରବାହିତ ହେଲା ଧର୍ମ, ଭକ୍ତି ଓ ଓ ଈଶ୍ୱର ଚେତନାର ମହାସ୍ରୋତ । ଛନ୍ଦନିବଦ୍ଧ କାବ୍ୟରଚନାର ସୂତ୍ରପାତ ହେଲା । ତେଣୁ ସାରଳାଙ୍କ ପରବର୍ତ୍ତୀ ଷୋଡ଼ଶ ଶତାବ୍ଦୀ ଯଥାର୍ଥରେ ଧର୍ମଯୁଗ ବା ଭକ୍ତିଯୁଗ ନାମରେ ପ୍ରଖ୍ୟାତ ।

ଏହି ଶତକରେ ଚୈତନ୍ୟଙ୍କର ଉତ୍କଳ ଆଗମନ, ପଞ୍ଚସଖାଙ୍କର ଆବିର୍ଭାବ, ଅତିବଡ଼ି ଜଗନ୍ନାଥଦାସଙ୍କ ଶ୍ରୀମଦ୍‌ଭାଗବତ ରଚନା ଓଡ଼ିଶାର ସମାଜ ଓ ସାହିତ୍ୟକୁ ବୈଷ୍ଣବୀୟ ଭକ୍ତିରସରେ ଓତପ୍ରୋତ ଭାବରେ ଆପ୍ଳୁତ ଓ ନିମଜ୍ଜିତ କରିସାରିଥିଲା । ଫଳରେ ଏକ ସମରପ୍ରିୟ ପୁରୁଷାଳି ଜାତି, ବୀରତ୍ୱ-ବର୍ଜିତ ଐତିହ୍ୟ-ବିସ୍ମୃତ ଦୁର୍ବଳ ସଙ୍କୀର୍ତ୍ତନସର୍ବସ୍ୱ

ଭକ୍ତମଣ୍ଡଳୀରେ ପରିଣତ ହୋଇଥିଲା । ଏହି ପ୍ରକ୍ରିୟାର ପରବର୍ତ୍ତୀ ପରିଣାମ ସ୍ୱରୂପ ଦୁର୍ଦ୍ଧର୍ଷ ଓଡ଼ିଆଜାତିର ସ୍ୱାଧୀନତାରବି ଅସ୍ତମିତ ହୋଇଥିଲେ ଏବଂ ଏହି ଜାତିକୁ ନିର୍ବେଦ ନିଶ୍ଚେଷ୍ଟ ରୂପେ, ଘୋର ଅବହେଳା, ଅବଜ୍ଞା ଓ ଲାଞ୍ଛନାର ଅନ୍ଧକାର ମଧ୍ୟରେ, ଦୀର୍ଘ ତିନିଶହ ବର୍ଷ ବ୍ୟାପି ସଡ଼ିବାକୁ ପଡ଼ିଥିଲା । ଏହି ସମୟରେ ରଚିତ ଜଗନ୍ନାଥ ଦାସଙ୍କ ଭାଗବତ, ବଳରାମ ଦାସଙ୍କ ଦାଣ୍ଡି ରାମାୟଣ, ଯଶୋବନ୍ତଙ୍କ ଟୀକା ଗୋବିନ୍ଦଚନ୍ଦ୍ର ପ୍ରଭୃତି ଗ୍ରନ୍ଥମାନଙ୍କର ସରଳ ଆବେଦନ ଓଡ଼ିଶାର ପୁରପଲ୍ଲୀର ଆବାଳବୃଦ୍ଧବନିତା ସବୁରି ପ୍ରାଣକୁ ନିବିଡ଼ ଭାବରେ ଆଲୋଡ଼ିତ ଓ ଅଭିଭୂତ କରିଥିଲା । ସଂସ୍କୃତ ଧର୍ମଗ୍ରନ୍ଥର ଦୁର୍ବୋଧ ତଥା ଜଟିଳ ତଥ୍ୟ ଓ ତତ୍ତ୍ୱ ସବୁକୁ ଓଡ଼ିଶାର ନିଃସ୍ୱ ନିରକ୍ଷର ନରନାରୀଙ୍କ ନିକଟରେ ପହଞ୍ଚାଇ ଦେବାରେ ଏ ଯୁଗର କବିମାନଙ୍କର ଭୂମିକା ଅତୀବ ମହାନ୍ ଓ ଗୁରୁତ୍ୱପୂର୍ଣ୍ଣ । ଫଳରେ 'ଭାଗବତ', 'ରାମାୟଣ' ଓଡ଼ିଶାର ପୁରପଲ୍ଲୀରେ ସର୍ବତ୍ର ନିତ୍ୟ-ଅଧୀତ ଓ ପୂଜିତ; ଯୋଗୀ କଣ୍ଠରେ କେନ୍ଦରା-ସମନ୍ୱିତ ଗୋବିନ୍ଦଚନ୍ଦ୍ରଙ୍କ କରୁଣ ରାଜ୍ୟତ୍ୟାଗ କାହାଣୀ ଉତ୍କଳର ବହୁଜନାଦୃତ ଚିରପରିଚିତ କରୁଣାତ୍ମକ ଲୋକ-ଗାଥା ।

ପଞ୍ଚସଖାଙ୍କ ପରବର୍ତ୍ତୀ କାଳରେ ବୈଷ୍ଣବ ସାହିତ୍ୟ ସଂଗୀତ ଓ ପଦାବଳୀର ବିପୁଳ ବିକାଶ ଘଟିଛି । ରାଧାକୃଷ୍ଣଙ୍କ ଅପ୍ରାକୃତ ପ୍ରେମଲୀଳା ଓ ବୈଷ୍ଣବୀୟ ଧର୍ମମତକୁ ଉପଜୀବ୍ୟକରି ଏ ସବୁର ସୃଷ୍ଟି । ଏହାର ମାଧ୍ୟମରେ, ବିଭିନ୍ନ ରସ ବର୍ଣ୍ଣନା ପ୍ରସଙ୍ଗରେ, କବିମାନଙ୍କର କଳ୍ପନାବିଳାସ, ବର୍ଣ୍ଣନା ଚାତୁରୀ, ଆଳଙ୍କାରିକତା ଓ ଚରିତ୍ର ଚିତ୍ରଣରେ ପାରଦର୍ଶିତା ମଧ୍ୟ ପ୍ରକଟିତ । ପରବର୍ତ୍ତୀ କାଳରେ ଏହି କାବ୍ୟରୀତିର ବିକାଶ ଓ ବିସ୍ତାରର ପରିଣାମ ହେଉଛି "ରୀତିଯୁଗ" ।

ଉପେନ୍ଦ୍ର ଭଞ୍ଜ ରୀତିଯୁଗର କବିମାନଙ୍କର ମୁକୁଟମଣି ସ୍ୱରୂପ । ତାଙ୍କ ରଚିତ ଅସଂଖ୍ୟ କାଳ୍ପନିକ କାବ୍ୟମାନଙ୍କ ମଧ୍ୟରେ 'ଲାବଣ୍ୟବତୀ', 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ', 'ପ୍ରେମସୁଧାନିଧି' 'ରସିକହାରାବଳୀ' ଯେପରି ଉଲ୍ଲେଖଯୋଗ୍ୟ, ରାମାୟଣ ବର୍ଣ୍ଣିତ ବିଷୟ ଅବଲମ୍ବନରେ ରଚିତ 'ବୈଦେହୀଶ ବିଳାସ' ଓ ଆଳଙ୍କାରିକ କାବ୍ୟ 'ରସପଞ୍ଚକ', 'ଛାନ୍ଦକାବ୍ୟବନ୍ଧୋଦୟ' ମଧ୍ୟ ସେହିପରି ଉଚ୍ଚକୋଟୀର ବିଦଗ୍ଧ-ବାକ୍‌ବିଳାସ-ସଂପନ୍ନ କୃତି । ସଂସ୍କୃତ ଆଳଙ୍କାରିକ କାବ୍ୟ-ସାହିତ୍ୟର ସକଳ ବିଭବ ଓ ଐଶ୍ୱର୍ଯ୍ୟରେ ସେ ଓଡ଼ିଆ କାବ୍ୟଭାରତୀଙ୍କୁ ଭୂଷିତ କରିବା ସଙ୍ଗେ ସଙ୍ଗେ ବିଭିନ୍ନ ରାଗ ରାଗିଣୀ ଆଦିର ନୂତନ ପ୍ରୟୋଗ ଫଳରେ ଓଡ଼ିଶୀ ସଙ୍ଗୀତର ନବଯୁଗ ସୃଷ୍ଟି କରିଯାଇଛନ୍ତି । ଉପେନ୍ଦ୍ରଙ୍କ ସମସାମୟିକ ତଥା କିଞ୍ଚିତ ପରବର୍ତ୍ତୀ କାଳର ଦୀନକୃଷ୍ଣ, ଅଭିମନ୍ୟୁ, ଭକ୍ତଚରଣ, ଯଦୁମଣି, କବିସୂର୍ଯ୍ୟ, ବନମାଳୀ, ଗୋପାଳକୃଷ୍ଣ, ଗୌରହରି ପ୍ରଭୃତି କବି ଓ ସଙ୍ଗୀତକାରଗଣ ଭଞ୍ଜୀୟ ସାହିତ୍ୟ ଓ ସଙ୍ଗୀତ ରୀତିକୁ ଅଧିକତର ମାର୍ଜିତ, ବିକଶିତ ଓ ବିଶୋଭିତ କରିଯାଇଛନ୍ତି । ନାନାପ୍ରକାର ପରୀକ୍ଷା ଓ ପ୍ରୟୋଗ ଫଳରେ ଓଡ଼ିଶୀ ସଙ୍ଗୀତର ସ୍ୱତନ୍ତ୍ର ସୌନ୍ଦର୍ଯ୍ୟ ଫୁଟିଉଠିଛି । ସାହିତ୍ୟ-ସଙ୍ଗୀତ

ସମନ୍ୱିତ ଯେଉଁ ନବଲତାକାଟିକୁ ଉପେନ୍ଦ୍ର ରୋପଣ କରିଥିଲେ, ତାହା ପରବର୍ତ୍ତୀ କବିମାନଙ୍କର ଆପ୍ରାଣ ପରିଚର୍ଯ୍ୟାରେ ପଲ୍ଲବିତ, ପୁଷ୍ପିତ ଓ ସୁରଭିତ ହୋଇଉଠିଛି ।

ଧର୍ମଧାରଣା, କଳ୍ପନାବିଳାସ, ବର୍ଣ୍ଣାଢ୍ୟ-ବର୍ଣ୍ଣନାପ୍ରିୟତା, ଶୃଙ୍ଗାର ଚେତନା ଓ ଅଳଙ୍କାର-ବିଜଡ଼ିତ ଉନବିଂଶବର୍ଷର ଓଡ଼ିଆ କାବ୍ୟ-ସାହିତ୍ୟରେ ବ୍ରଜନାଥ ବଡ଼ଜେନା ଓ ଭୀମା ଭୋଇ ଦୁଇଟି ଆନନ୍ଦଦାୟକ ବ୍ୟତିକ୍ରମ । 'ସମରତରଙ୍ଗ'ର ଉଗ୍ର ଦେଶାତ୍ମବୋଧ, ବୀରତ୍ୱ-ବ୍ୟଞ୍ଜକ ଭାଷା ଓ ବର୍ଣ୍ଣନା ଶୈଳୀ ଏବଂ 'ସ୍ତୁତିଚିନ୍ତାମଣି' ଓ ଅନ୍ୟାନ୍ୟ ଭଜନାବଳୀର ଅହିଂସ-ଭକ୍ତିଚେତନା, ବିଶ୍ୱୈକପ୍ରାଣତା ତଥା ପ୍ରକାଶ ଭଙ୍ଗୀର ସ୍ୱଚ୍ଛନ୍ଦ-ସାବଲୀଳତା ଏହାର ବୈଶିଷ୍ଟ୍ୟ । ଏହିଠାରୁ ହିଁ ଆଦି ମଧ୍ୟଯୁଗୀୟ କାବ୍ୟ-ସାହିତ୍ୟର ସମାପ୍ତି ଓ ନବଯୁଗର ଗୌରବଦୀପ୍ତ ସୂର୍ଯ୍ୟୋଦୟ ।

ଊନବିଂଶ ଶତାବ୍ଦୀର ଦାରୁଣ ଦୁର୍ବିପାକ ମଧ୍ୟରେ ନବଯୁଗର ଅଭ୍ୟୁତ୍ଥାନ । ଦୁର୍ଭିକ୍ଷ, ମହାମାରୀର କରାଳ ତାଣ୍ଡବ, ଓଡ଼ିଆ ଭାଷା ବିଲୋପୀ ଆନ୍ଦୋଳନ, ଓଡ଼ିଶାର ନୌବାଣିଜ୍ୟର ଲୋପ ଓ ସର୍ବୋପରି ଓଡ଼ିଶାର ରାଜନୈତିକ ସ୍ୱାତନ୍ତ୍ର୍ୟ-ହୀନତା ଓ ଅଣଓଡ଼ିଆମାନଙ୍କର ପ୍ରଶାସନିକ ଓ ସାଂସ୍କୃତିକ ଅତ୍ୟାଚାର ଓ ଅବହେଳାରେ ଓଡ଼ିଆଜାତି ଯେତେବେଳେ ରୁଦ୍ଧଶ୍ୱାସ, ସେତିକିବେଳେ ଓଡ଼ିଶାର ଘନତମିସ୍ରାଚ୍ଛନ୍ନ ଆକାଶରେ ଉଦୟ ହେଲେ ଜ୍ୟୋତିଷ୍କତ୍ରୟୀ-ଫକୀରମୋହନ ସେନାପତି, ରାଧାନାଥ ରାୟ ଓ ମଧୁସୂଦନ ରାଓ । ଇଂରେଜୀ ଶିକ୍ଷାର ସଦ୍ୟ ପ୍ରବର୍ତ୍ତନ ଓ ପ୍ରସାର ଫଳରେ ସଂସ୍କୃତି ଓ ସାହିତ୍ୟ କ୍ଷେତ୍ରରେ ଯେଉଁ ନବ ଦିଗନ୍ତର ସନ୍ଧାନ ମିଳିଲା, ତା'ର ବାର୍ତ୍ତାବହ ରୂପେ ଏହି ପ୍ରତିଭା-ତ୍ରୟ ଏ ଦେଶର ସାହିତ୍ୟକୁ ନୂତନ ବର୍ଣ୍ଣ ସମାରୋହରେ ମଣ୍ଡିତ କଲେ, ସମାଜରେ ଆଣିଲେ ବଳିଷ୍ଠ ପ୍ରାଣ-ପ୍ରେରଣା । ସତ୍ୟ-ଶିବ-ସୁନ୍ଦରର ମନୋଜ୍ଞମିଳନରେ ଓଡ଼ିଆ ସାହିତ୍ୟ ହୋଇଉଠିଲା ପ୍ରକୃତି-ମନୁଷ୍ୟ ଓ ଦେବତାର ମହାପୀଠସ୍ଥଳୀ ।

ଫକୀରମୋହନ ଥିଲେ ଗାଳ୍ପିକ, ଔପନ୍ୟାସିକ ତଥା ମାତୃଭୂମି ଓ ମାତୃଭାଷାର ଉପାସକ ଓ ରକ୍ଷକ । ଘୋର ଦୁର୍ଦ୍ଦିନରେ ନିରବଚ୍ଛିନ୍ନ ସଂଗ୍ରାମ ଚଳାଇ ସେ ଏ ଜାତିର ଭାଷା ଓ ସାହିତ୍ୟକୁ ବଞ୍ଚାଇ ରଖିବା ପାଇଁ ଯେଉଁ ଉଦ୍ୟମ କରିଥିଲେ, ସେଥିଲାଗି ଏ ଜାତିର ଓ ସାହିତ୍ୟର ସେ ଯଥାର୍ଥ "ସେନାପତି" । ଅନୁବାଦ, ଚିନ୍ତାଶୀଳ ପ୍ରବନ୍ଧରଚନା, ଗୀତ-କବିତା ରଚନାରେ ତାଙ୍କର ବହୁମୁଖୀ ପ୍ରତିଭା ଓ ଅସାଧାରଣ କୃତିତ୍ୱହିଁ ପରିସ୍ଫୁଟ । କବିତାରେ ବ୍ୟଙ୍ଗ, ହାସ୍ୟ ଏବଂ କରୁଣ ରସ ଯୁଗପତ୍ ଫୁଟାଇବାରେ ସେ ରଥୀ, ସେ ଯଥାର୍ଥରେ ବ୍ୟାସକବି । ରାଧାନାଥ ଏ ଯୁଗର ସର୍ବଶ୍ରେଷ୍ଠ କାବ୍ୟ-ପ୍ରତିଭା । ସୁପଣ୍ଡିତ, ବହୁଶାସ୍ତ୍ରବିତ୍ କବି, ପାଶ୍ଚାତ୍ୟ ସାହିତ୍ୟରୁ ଅମୂଲ୍ୟ ରତ୍ନରାଜି ଆହରଣକରି, ସେଗୁଡ଼ିକୁ ଅଭିନବ ରୀତିରେ ନିଜସ୍ୱୀକରଣକରି, ଓଡ଼ିଶାର ଭୂଗୋଳ ଇତିହାସ ଓ କିମ୍ବଦନ୍ତୀ ସହିତ

ମିଳାଇ ଏଭଳି ଉପସ୍ଥାପନ କଲେ ଯେ ତାହା ସଂପୂର୍ଣ୍ଣ ମୌଳିକ କୃତି ପରି ପ୍ରତିଭାତ ହେଲା । ଫଳରେ ସମସାମୟିକ ରକ୍ଷଣଶୀଳ ସମାଲୋଚକ ଏବଂ ପରବର୍ତ୍ତୀ କାଳର ଉଗ୍ର ଜାତୀୟତାବାଦୀ ସମାଲୋଚକଙ୍କ ଦ୍ୱାରା ରାଧାନାଥ କଠୋର କଣ୍ଠରେ ସମାଲୋଚିତ ହୋଇଥିଲେ ହେଁ, ରାଧାନାଥ ପ୍ରତିଭାର ପ୍ରଚଣ୍ଡ ଦୀପ୍ତି ସମସ୍ତଙ୍କର ଚକ୍ଷୁ ଝଲସାଇ ଦେଇଛି ଏବଂ ସାହିତ୍ୟର ଇତିହାସ ଲେଖକମାନେ ସେହି ଶୃଙ୍ଗ ପ୍ରତିଭା ଉଦ୍ଦେଶ୍ୟରେ ବାରମ୍ବାର ମଥା ନତ କରିଥାନ୍ତି । ସାହିତ୍ୟରେ ବହୁ ନୂତନତା ପରିବେଷଣ ଓ ପ୍ରାଚ୍ୟ ପାଶ୍ଚାତ୍ୟ ଚିନ୍ତାଧାରାର ସମନ୍ୱୟ ମାଧ୍ୟମରେ ସେ ଯେଉଁ ନବଆନ୍ଦୋଳନର ସୂତ୍ରପାତ କଲେ ତାହାହିଁ ତାଙ୍କୁ ଓଡ଼ିଆ ସାହିତ୍ୟରେ ଏକକ ଅନନ୍ୟସାଧାରଣ ସ୍ଥାନ ଦେଇଛି । ଆହରଣରେ ନୂତନତା, ସମୀକରଣରେ ଦକ୍ଷତା ଓ ଉପସ୍ଥାପନ ତଥା ପରିବେଷଣରେ ମୌଳିକତା ହିଁ ତାଙ୍କର ସର୍ବଶ୍ରେଷ୍ଠ କୃତିତ୍ୱ । ଅବହେଳିତା ଉତ୍କଳର ନଦନଦୀ, କାନନକନ୍ଦର, ସାଗରସରିତ ତାଙ୍କ ଲେଖନୀ ମୂନରେ ଅନିର୍ବଚନୀୟ ଭାବେ ସୁଷମାମଣ୍ଡିତ ହୋଇଉଠିଛି । 'ଜାତୀୟ ଭାବନା, ପ୍ରକୃତି ପ୍ରୀତି, ଅମିତ୍ରାକ୍ଷର ଛନ୍ଦର ପ୍ରବର୍ତ୍ତନ, କରୁଣରସଚେତନା, ବ୍ୟଙ୍ଗବିଦ୍ରୂପର ପ୍ରୟୋଗ ତାଙ୍କର ଅମ୍ଳାନ କୀର୍ତ୍ତି । ଭକ୍ତକବି ମଧୁସୂଦନଙ୍କର ଆଦର୍ଶ-ପୂତ ଜୀବନ ଓ ବିଭୁ-ପ୍ରେମ-ପ୍ରଣୋଦିତ କାବ୍ୟକବିତା ଏକ ଓ ଅଭିନ୍ନ । ନିଜ ଭିତରେ ସତ୍ ଚିତ୍ ଆନନ୍ଦକୁ ଅନୁଭବ କରିବା ଓ ଆନନ୍ଦଘନ ବ୍ରହ୍ମଙ୍କର ଅଖଣ୍ଡ ପ୍ରେମ ସ୍ରୋତରେ ନିମଜ୍ଜିତ ହୋଇ ଜୀବନକୁ ସାର୍ଥକ କରିବା ସକାଶେ ତାଙ୍କ ସୃଷ୍ଟିରେ ରହିଛି ବଳିଷ୍ଠ ପ୍ରେରଣା । ସୃଷ୍ଟିର କୋଣେ ଅନୁକୋଣେ, ତାରାରେ ତାରାରେ, ସୂର୍ଯ୍ୟଚନ୍ଦ୍ର, ପାଣିପବନ ଓ ଧରଣୀର ଧୂଳିକଣାରେ ମଧ୍ୟ ଭଗବତ୍ ସତ୍ତା ଉପଲବ୍ଧି କରି ତାଙ୍କର ଜ୍ଞାନଦୀପ୍ତ ଚକ୍ଷୁ ଆନନ୍ଦାଶ୍ରୁରେ ଆପ୍ଳୁତ ହୋଇଉଠିଛି । ଶିଶୁସାହିତ୍ୟରୁ ଆରମ୍ଭକରି ତାଙ୍କର ଉଚ୍ଚ ଆଧ୍ୟାତ୍ମିକ ଚେତନା ସମ୍ବଳିତ କବିତା ଗୁଡ଼ିକ ପର୍ଯ୍ୟନ୍ତ ସବୁଥିରେ ଜୀବନକୁ ଉଚ୍ଚତର, ମହତ୍ତର କରିବାର ମହାନ୍ ପ୍ରେରଣା ସୁଲଭ୍ୟ ।

କବି ଗଙ୍ଗାଧର ମେହେର ଆଧୁନିକ ଓଡ଼ିଆ ସାହିତ୍ୟର ଆଦିପର୍ବର ଅନ୍ୟତମ ସୁଯୋଗ୍ୟ କର୍ଣ୍ଣଧାର । ସେ ତାଙ୍କ କାବ୍ୟରେ ପ୍ରାଚୀନ ପାରମ୍ପରିକ କାବ୍ୟାଦର୍ଶ ଓ ଆଧୁନିକ ଯୁଗରୁଚି ମଧ୍ୟରେ ବାଞ୍ଛିତ ସମନ୍ୱୟର ସ୍ୱର୍ଣ୍ଣସେତୁ ନିର୍ମାଣ କରି, ତାତ୍କାଳିକ ସଂସ୍କୃତିକ କ୍ଷେତ୍ରରେ ଆଶା, ଆଶ୍ୱସ୍ତି ଓ ଆନନ୍ଦର ପ୍ରତୀକ ରୂପେ ଦେଖାଦେଇଥିଲେ । ଭାରତୀୟ ପୁରାଣ ପରମ୍ପରା ଓ ଆର୍ଯ୍ୟ ଜୀବନଧାରାର ମହତ୍ତ୍ୱ ବର୍ଣ୍ଣନରେ ତାଙ୍କର କାବ୍ୟାବଳୀ ମୁଖରିତ । ଗଭୀର ଦେଶାତ୍ମବୋଧ ଓ ବିଭୁପ୍ରୀତି ତାଙ୍କ ରଚନାର ଅନବଦ୍ୟ ଆକର୍ଷଣ । ତାଙ୍କ ରଚିତ 'ଭକ୍ତି', 'ଅମୃତମୟ' ଓ 'ମଧୁମୟ' କେବଳ ଦାର୍ଶନିକତତ୍ତ୍ୱ ଦୃଷ୍ଟିରୁ ନୁହେଁ, ଅଧିକନ୍ତୁ ଉନ୍ନତ ଗୀତି କବିତା ରୂପେ ମଧ୍ୟ ପ୍ରସିଦ୍ଧ ।

ଜାତି ଓ ଜାତୀୟଜୀବନରେ ଉତ୍ଥାନ ଓ ପତନ, ଆଲୋକ ଓ ଅନ୍ଧକାର ପରି ଚିରନ୍ତନ । ପରାଧୀନତାର ନିର୍ମମ ନିଷ୍ପେଷଣ ମଧ୍ୟରେ ସମସ୍ତ ଉତ୍ସାହ, ଉଦ୍ଦୀପନା ଓ ଜାତୀୟ

ସଂହତ ହୁଏଇଥିବା ଓଡ଼ିଆଜାତିର ପ୍ରାଣରେ ନବଶକ୍ତିର ସଞ୍ଚାର କଲେ ମଧୁସୂଦନ ଦାସ । ତାଙ୍କ ନେତୃତ୍ୱରେ ଗଠିତ ଓ ପରିଚାଳିତ ଉତ୍କଳସମ୍ମିଳନୀ ସୃଷ୍ଟିକଲା ନୂତନ ଇତିହାସ । ସୁପ୍ତ, ଅତ୍ୟାଚାରିତ, ଅବହେଳିତ ଓଡ଼ିଆଜାତି ଗତଗୌରବ ଓ ହୃତସୌରଭର ପୁନରୁଦ୍ଧାର ପାଇଁ ଚେଇଁ ଉଠିଲା । ମଧୁସୂଦନ ପବିତ୍ର ଉତ୍କଳ ସମ୍ମିଳନୀ ପୀଠରେ ଜାତିକୁ ଐକ୍ୟବଦ୍ଧ କରିବା ପାଇଁ ଶୁଣାଇଲେ, ଉଦାର ଗମ୍ଭୀର କଣ୍ଠରେ ଉଦ୍‌ବୋଧନ ବାଣୀ ।

ମଧୁସୂଦନ ଦାସ ମୁଖ୍ୟତଃ ଉତ୍କଳର ଜାତୀୟଜୀବନର ନବପ୍ରାଣ ପ୍ରତିଷ୍ଠାତା । ଏ ଦେଶ, ଏ ଜାତିକୁ କେନ୍ଦ୍ରକରି ସେ ଯାହା ଚିନ୍ତା କରୁଥିଲେ, ତାହା ଅଭିବାଞ୍ଛିତ ହୋଇଛି ତାଙ୍କର ଅଭିଭାଷଣରେ, ତାଙ୍କର ମୁଷ୍ଟିମେୟ କବିତାରେ । ଏହି ସମୟରେ ଓଡ଼ିଶାର ସାଂସ୍କୃତିକ କ୍ଷେତ୍ରରେ ଓ ଜାତୀୟ ଜୀବନଧାରାରେ ଯେଉଁ ନବଆନ୍ଦୋଳନର ସୂତ୍ରପାତ ହେଲା, ତାହାର ଚରମ ପରିପ୍ରକାଶ ଘଟିଲା ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ ଗୋଦାବରୀଶଙ୍କ କାବ୍ୟ-କବିତାରେ । ଓଡ଼ିଆ ସାହିତ୍ୟରେ ଏହି ତ୍ରୟୀଙ୍କର ସାଧନା, ଆତ୍ମମୁଖ୍ୟ ଓ ପ୍ରକୃତି ଦୃଷ୍ଟିରୁ ନୂତନ ଯୁଗ ସୃଷ୍ଟିକଲା; ତାହାହିଁ ପ୍ରଖ୍ୟାତ ସତ୍ୟବାଦୀ ଯୁଗ । ସମାଜସେବା ସହ ସାହିତ୍ୟର, କବିତାସହ କର୍ମପ୍ରେରଣାର ଅପୂର୍ବ ସମନ୍ୱୟ ସଂଘଟିତ ହେଲା । ଉଗ୍ର ଜାତୀୟତାବାଦ ଏ ଯୁଗର ପ୍ରାଣସ୍ପନ୍ଦନ । ଏମାନଙ୍କର ସୃଷ୍ଟିରେ ଅତୀତ ଉତ୍କଳର ଗୌରବ ଗରିମାବ୍ୟଞ୍ଜକ ତ୍ୟାଗପୂତ ଇତିହାସ, କିମ୍ବଦନ୍ତୀ ପ୍ରଭୃତି ନବୀନ ସୁଷମାରେ ରୂପାୟିତ ହୋଇ ଉଠିଲା । ଅତୀତରୁ ଅନୁପ୍ରେରଣା ଲଭି କରି ଅଧଃପତିତ ବର୍ତ୍ତମାନକୁ ନୂତନ ଉଦ୍ଦୀପନାରେ ଭରିଦେବା ପାଇଁ ସତ୍ୟବାଦୀଗୋଷ୍ଠୀର ସାଧନା ଓ ସିଦ୍ଧି ଅବିସ୍ମରଣୀୟ ।

ସତ୍ୟବାଦୀର ଉଗ୍ର ଜାତୀୟବାଦୀ ସାହିତ୍ୟ ଶିଳ୍ପିବୃନ୍ଦ ସକ୍ରିୟ ରାଜନୀତିର ଘନଘଟା-ମଧ୍ୟରେ ଅଧିକରୁ ଅଧିକତର ଜଡ଼ିତ ହୋଇ ପଡ଼ିବା ଫଳରେ ସେମାନଙ୍କର ସ୍ୱରଝଙ୍କାର କ୍ରମଶଃ କ୍ଷୀଣ ହୋଇ ଆସିଲା । ଏହି ଆକସ୍ମିକ ଶୂନ୍ୟତାର ସୁଯୋଗରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଯେଉଁ ତରୁଣ ଲେଖକଗୋଷ୍ଠୀ ଆବିର୍ଭୂତ ହେଲେ, ସେମାନେ 'ସବୁଜ' ନାମରେ ସୁପରିଚିତ । ବଙ୍ଗୀୟ-ପ୍ରଭାବ-ପରିପୁଷ୍ଟ ଓ ସର୍ବତୋଭାବେ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଦ୍ୱାରା ପ୍ରଭାବିତ ଏହି ତରୁଣ ଲେଖକଗୋଷ୍ଠୀର ପ୍ରଭାବ ପ୍ରାୟଶଃ ଅସ୍ପଷ୍ଟ, ଉଦ୍ଦେଶ୍ୟହୀନ ଓ ରହସ୍ୟାବୃତ । ବୟସର ସ୍ୱଳ୍ପତା, ଅନୁଭୂତିର ଅଗଭୀରତା, ଜୀବନ ଅଭିଜ୍ଞତାର ଅଭାବ ଓ ନିର୍ଦ୍ଦିଷ୍ଟ ଜୀବନଦର୍ଶନର ଅନୁପସ୍ଥିତିଫଳରେ 'ସବୁଜ ସାହିତ୍ୟ'ର ଚିରନ୍ତନ ମୂଲ୍ୟ ବ୍ୟାହତ । କିନ୍ତୁ ଏହା ତାରୁଣ୍ୟ-ଚଞ୍ଚଳ-ପ୍ରାଣର ଉଦ୍ଦାମ-ଆବେଗ-ମଧୁର ସ୍ୱପ୍ନ-ସୁରଭି-ଭରା ଉଚ୍ଛ୍ୱସିତ ଅଭିବ୍ୟକ୍ତି । ସବୁଜ-ଶିଳ୍ପୀମାନଙ୍କର କବିତାବଳୀରେ ଯେଉଁ ସାଙ୍ଗୀତିକତା, ସାହସିକତା, ଓ ସ୍ୱାଧୀନ ଚିନ୍ତାର ସବୁଜିମା ପରିସ୍ଫୁଟ, ତାହା 'ସବୁଜ କବିତା' ନାମର ଯଥାର୍ଥତା ପ୍ରତିପାଦକ ନିମନ୍ତେ ଯଥେଷ୍ଟ । ସବୁଜଦଳର ସଂଗଠିତ ସାହିତ୍ୟସାଧନା ଅଧିକ ସିଦ୍ଧି ଓ ସଫଳତା ଲଭି କରିବା ପୂର୍ବରୁ ବିପର୍ଯ୍ୟସ୍ତ ହୋଇପଡ଼ିଲା । କେବଳ କାଳନ୍ଦୀଚରଣ ଓ ବୈକୁଣ୍ଠନାଥଙ୍କ ବ୍ୟତୀତ ଅନ୍ୟ ତିନିଜଣ ସବୁଜ ଶିଳ୍ପୀ ଓଡ଼ିଆ ସାହିତ୍ୟ କ୍ଷେତ୍ରରୁ ଅପସରି ଗଲେ ।

ସବୁଜୋତ୍ତର କାଳରେ ଆଉ କୌଣସି ସଂଘବଦ୍ଧ ସାହିତ୍ୟ ସୃଷ୍ଟିର ଉଦ୍ୟମ ହୋଇନାହିଁ । କିନ୍ତୁ ବହୁ ପ୍ରତିଭାଶାଳୀ ମାନସ ଏକକ ଓ ଅନ୍ତରଂଗ ଭାବରେ କବିତା ରଚନାରେ ଆତ୍ମନିୟୋଗ କରିଛନ୍ତି । ଏହି ନୀରବ ଅଥଚ ବଳିଷ୍ଠ ସାଧକବୃନ୍ଦଙ୍କର ରଚନାବଳୀ ଦେଶାତ୍ମବୋଧ ପ୍ରଣୟଚେତନା, ସ୍ୱଦେଶ ସଂସ୍କୃତିପ୍ରତି ଅପ୍ରତିହତ ଅନୁରାଗ, ପ୍ରକୃତିପ୍ରୀତି, ବେଦନାବିଦଗ୍ଧ ମାନବାତ୍ମାର ଅଶ୍ରୁଳ ପରିପ୍ରକାଶ ଆଦି ବହୁ ବର୍ଣ୍ଣାଢ଼୍ୟ କାବ୍ୟ ବୈବିଧ୍ୟ ତଥା ବୈଚିତ୍ର୍ୟ ବିଳସିତ । କାନ୍ତକବି ଲକ୍ଷ୍ମୀକାନ୍ତ, ଗୋଦାବରୀଶ ମହାପାତ୍ର, ମାୟାଧର ମାନସିଂ ପ୍ରଭୃତିଙ୍କ ରଚିତ କବିତାଗୁଚ୍ଛରେ ଯେଉଁ ମହିମାମୟୀ ସୁଷମାଶାଳିନୀ ଦେଶଜନନୀର ଚିତ୍ର ଫୁଟି ଉଠିଲା, ଯେଉଁ ସ୍ୱଦେଶପ୍ରୀତି ଓ ଜାତୀୟ ଉଦ୍‌ବୋଧନର ମନ୍ଦ୍ର-ମଧୁର ବାଣୀ ଝଙ୍କୃତ ହୋଇ ଉଠିଲା, ଯେଉଁ ମାନବିକ ପ୍ରଣୟର ସରସ-ସ୍ୱପ୍ନଧାରା ସାବଲୀଳ ଗତିରେ ଝରିଆସିଲା, ଯୁଗଯନ୍ତ୍ରଣାର ଅଶ୍ରୁକାତର ଅନୁଭୂତି ସଙ୍ଗେ ଆତ୍ମଅନ୍ୱେଷଣ ଓ ଜୀବନ-ଜିଜ୍ଞାସାର ଯେଉଁ ସ୍ୱର ଉଚ୍ଚାରିତ ହେଲା, ସମସାମୟିକ ସମାଜ ଓ ବ୍ୟକ୍ତିଚରିତ୍ରର ଦୋଷ, ତ୍ରୁଟି ଓ ବିଶୃଙ୍ଖଳା ବିରୁଦ୍ଧରେ ଯେଉଁ ବିରକ୍ତି ଶ୍ଳେଷାତ୍ମକ ଭାବରେ ଫୁଟିଉଠିଲା, ତାହା ଅନ୍ତର୍ନିହିତ ସୁଷମା ଓ ଶୈଳିକ ସୌନ୍ଦର୍ଯ୍ୟ ଉଭୟ ଦୃଷ୍ଟିରୁ ସାର୍ଥକ ଓ ରସୋତ୍ତୀର୍ଣ୍ଣ ।

ପରବର୍ତ୍ତୀକାଳରେ, ବିଶ୍ୱବ୍ୟାପୀ ଘଟଣାପ୍ରବାହର ଦ୍ରୁତ ଅଗ୍ରଗତି ଫଳରେ ପାରମ୍ପରିକ ଚିନ୍ତାଧାରାରେ ଗୁରୁତର ସଂଘର୍ଷ ଦେଖାଦେଲା । ପ୍ରଳୟଙ୍କରୀ ମହାଯୁଦ୍ଧର କରାଳ ପ୍ରଭାବ ଓ ସଦ୍ୟଜାଗ୍ରତ ଭାରତୀୟ ଜନଗଣର ପ୍ରବଳ ମୁକ୍ତି ସଂଗ୍ରାମ ସାଙ୍ଗକୁ କାର୍ଲମାର୍କସ୍‌ଙ୍କ ଉଦ୍‌ଘୋଷିତ ସାମ୍ୟବାଦୀ ଦର୍ଶନ ଓ ଯୌନତତ୍ତ୍ୱବିତ୍ ଫ୍ରୟେଡ୍‌ଙ୍କ ମନୁଷ୍ୟର ଅବଚେତନ ମନର ଆବିଷ୍କାର, ଚିନ୍ତାଜଗତରେ ନୂତନ ଦିଗ୍‌ବଳୟର ସନ୍ଧାନ ଦେବା ସଙ୍ଗେ ସଙ୍ଗେ ବିରାଟ ଆଲୋଡ଼ନ ସୃଷ୍ଟି କଲା । ଅସ୍ଥିରତା, ଅନିଶ୍ଚିତତା ଓ ବିଶ୍ୱାସହୀନତାର ମୁହୁର୍ମୁହୁ ଆକ୍ରମଣ ଫଳରେ ବହୁ ପ୍ରାଚୀନ ମୂଲ୍ୟବୋଧ ବାଧାପ୍ରାପ୍ତ ହେବା ସଙ୍ଗେ ସଙ୍ଗେ ଓଡ଼ିଆ କବିତା ରାଜ୍ୟରେ ବହୁ ନୂତନ ଭାବଧାରାର ଆବିର୍ଭାବ ଘଟିଲା । କାବ୍ୟର ପରିଧି କ୍ରମଶଃ ହୋଇ ଉଠିଲା ବ୍ୟାପକ ଓ ବିସ୍ତୀର୍ଣ୍ଣ । ମନୁଷ୍ୟ ସହିତ କବିତାର ଯୋଗାଯୋଗ ହୋଇ ଉଠିଲା ଅଧିକ ଅନ୍ତରଂଗ, ଫଳରେ ସାଂପ୍ରତିକ କବିତାରେ ଦେଖିବାକୁ ମିଳିଲା ଯୁଗ ଯନ୍ତ୍ରଣା ଓ ଦ୍ୱିଧାଗ୍ରସ୍ତ ତଥା ଆହତ ବ୍ୟକ୍ତିଚିତ୍ତର ବିଖଣ୍ଡିତ ପ୍ରକାଶର ବିଭିନ୍ନ ସ୍ୱରୂପ । ଯୁଦ୍ଧତ୍ରସ୍ତ, ଅନିଶ୍ଚିତ ଓ ଶଙ୍କିତ ପୃଷ୍ଠଭୂମିରେ ରଚିତ, ଜୀବନର ଜଟିଳତା, ଅସଂଲଗ୍ନତା ଓ ଅନ୍ୟାନ୍ୟ ବହୁ ସାମାଜିକ, ରାଜନୈତିକ, ଆନ୍ତର୍ଜାତିକ ଘଟଣାବଳୀଦ୍ୱାରା ପ୍ରଭାବିତ ଏହି କବିତା ଗୁଡ଼ିକ ବହୁସ୍ଥଳରେ ହୋଇଉଠିଲା ଅବୋଧ ଓ ଦୁର୍ବୋଧ । ଏ ଧରଣର ପ୍ରଗତିଶୀଳ ଆଭିମୁଖ୍ୟ ଓ ପରିବର୍ତ୍ତିତ ଆଙ୍ଗିକର ପ୍ରୟୋଗ ଦୃଷ୍ଟିରୁ ସଚ୍ଚିରାଉତରା ପ୍ରଥମ ପଥିକୃତ୍ ହେଲେହେଁ, କବି ଅନନ୍ତ ପଟ୍ଟନାୟକ, ଗୁରୁପ୍ରସାଦ ମହାନ୍ତି, ବିନୋଦଚନ୍ଦ୍ର ନାୟକ,

ବେଣୁଧର ରାଉତ, ଚନ୍ଦ୍ରମଣି ବେହେରା, କୃଷ୍ଣଚନ୍ଦ୍ର ତ୍ରିପାଠୀ, ଗୋପାଳଚନ୍ଦ୍ର ମିଶ୍ର ଓ ଜାନକୀବଲ୍ଲଭ ମହାନ୍ତି ପ୍ରଭୃତି ଅସାମାନ୍ୟ ସିଦ୍ଧିର ପରିଚୟ ଦେଇପାରିଛନ୍ତି ।

ଆଜିର କବିତା ସାଂପ୍ରତିକ ଜୀବନଧାରାର ସାମଗ୍ରିକ ତଥା ସ୍ୱୟଂସଂପୂର୍ଣ୍ଣ ପରିପ୍ରକାଶ । ଏହା ଆଧୁନିକ ଜୀବନର ସ୍ପର୍ଶ, ସଂଘର୍ଷ ଓ ଘାତପ୍ରତିଘାତମୟ ଜଞ୍ଜାଳ-ଜଟିଳ ବହୁମୁଖୀ ଜୀବନର ଭାରରେ ଭାରାକ୍ରାନ୍ତ । ଏଥିରେ ଏକ ନୈର୍ବ୍ୟକ୍ତିକ ସମାଜ-ମାନସ ପ୍ରତିଫଳିତ । ଏହା ଭାଷା, ଛନ୍ଦ, ଅଳଙ୍କାର ଓ ସଙ୍ଗୀତର ଐନ୍ଦ୍ରଜାଲିକ ମାଧୁର୍ଯ୍ୟ ଓ ଯାଦୁକରୀ ଶକ୍ତି ହରାଇଛି ସତ୍ୟ, କିନ୍ତୁ ଏଥିରେ ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ ଅଧିକତର ସ୍ପଷ୍ଟ ଓ ଶାଣିତ ଭାବରେ ଫୁଟିଉଠୁଛି । ସାଂପ୍ରତିକ ଯୁଗମାନସର ଯଥାର୍ଥ କାବ୍ୟରୂପହିଁ ଆଜିର କବିତା; ବ୍ୟକ୍ତିର ଆଶା ଆକାଙ୍‌କ୍ଷା, ସଫଳତା-ବିଫଳତା, ଅଶ୍ରୁ-ହାସ୍ୟ, ଚେତନ ଓ ଅବଚେତନ ମାନସର ରୂପାୟନ ମଧ୍ୟରେ ଜୀବନପ୍ରତି ଦୃଷ୍ଟିଭଙ୍ଗୀର ଅଭିନବତ୍ୱ ହିଁ ଏଥିରେ ପ୍ରକଟିତ । ଆଙ୍ଗିକତା କ୍ଷେତ୍ରରେ ପ୍ରଚୁର ପ୍ରତୀକ ଓ ରୂପକଳ୍ପର ପ୍ରୟୋଗ, କବି ପ୍ରସିଦ୍ଧି ବର୍ଜନ, ଭାବରାଶିର ଅସଂବଦ୍ଧତା, ଖଣ୍ଡବାକ୍ୟ ପ୍ରୟୋଗ ଓ ବହୁଳ ଉଦ୍ଧୃତିରେ ଏହା ଭାରାକ୍ରାନ୍ତ ।

ବିଭିନ୍ନ ପରୀକ୍ଷା ଓ ପ୍ରୟୋଗର ଧାରା ଏବେ ବି ଓଡ଼ିଆ କବିତା କ୍ଷେତ୍ରରେ ଅବ୍ୟାହତ ରହିଛି । କବିର ବୌଦ୍ଧିକ ପ୍ରତିକ୍ରିୟା ଓ ତା'ର ପ୍ରକାଶର ଟେକ୍‌ନିକ ବାରମ୍ବାର ବଦଳୁଛି ଓ ବଦଳିବ । ଏହି ନିତ୍ୟ ଅସନ୍ତୋଷ ଓ ଚିରନ୍ତନ ଅନ୍ୱେଷା ହିଁ ଆଜିର ଜୀବନ ଆଉ ଆଜିର କବିତା ।

ବ୍ରହ୍ମପୁର

ବିଭୂଦତ୍ତ ମିଶ୍ର
ରିଡର, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ଖଲ୍ଲିକୋଟ କଲେଜ

# ସୂଚୀପତ୍ର

# ଅର୍ଜ୍ଜୁନଙ୍କ ବରପ୍ରାପ୍ତି

**ସାରଳା ଦାସ**

ଶୁଣ ହେ ମହାରାଜା ଯେଉଁ ଦିନ ବିଦ୍ୟା ପରୀକ୍ଷା କଲେ
ସେହି ଦିନୁ କଉରବେ ମନେ ଅନ୍ତର ଧଇଲେ ।୧।
ଦ୍ରିଯୋଧନ ମୂଳେ ଯେ ବିଗୃର କରନ୍ତି
ଆମ୍ଭ ତହିଁ ଗୁରୁଙ୍କର ନାହିଁ ଶୁଦ୍ଧମତି ।୨।
ଦ୍ରୋଣେ ଯେ ଆମ୍ଭର ବିଦ୍ୟାଗୁରୁ ହୋଇଲେ
ସ୍ନେକା କରି ଅର୍ଜ୍ଜୁନକୁ ସେ ଶସ୍ତ୍ର ଶିଖାଇଲେ ।୩।
ଆମ୍ଭେ ଶତେ ସ୍ନେକ ଉତ୍ତର ବିଦ୍ୟାୟେ ଶକତା ନୋହିଲୁ
ଦ୍ରୋଣ ପ୍ରାୟେ ଗୁରୁ ଥାଉଁ ବିଦ୍ୟା ନ ପାଇଲୁ ।୪।
ଏମନ୍ତେ ବିଗୃର ଧୃତରାଷ୍ଟ୍ର ତନୟେ
କର୍ଣ୍ଣ ଦ୍ରିଯୋଧନ ଧୃଶାସନ ମୂଳେ ଗୁରୁଙ୍କୁ ବିନୟେ ।୫।
ହେ ଗୁରୁ ତୁମ୍ଭେ ବେଦ ଶାସ୍ତ୍ରେ ସକଳ ନିର୍ଜିତା
ପ୍ରଶୁରାମଙ୍କ ବିଦ୍ୟାୟେ ତୁମ୍ଭେ ତ୍ରୈଲୋକ୍ୟ ଜିଣନ୍ତା ।୬।
ତୁମ୍ଭର ମନରେ ଆମ୍ଭଙ୍କୁ ଶୁଦ୍ଧ ଚିତ୍ତ ନାହିଁ
ସ୍ନେକା କରି ଅର୍ଜ୍ଜୁନକୁ ଶିଖାଅସି ଗୋସାଇଁ ।୭।
ଦ୍ରୋଣ ପ୍ରାୟେ ଗୁରୁଙ୍କୁ ଆମ୍ଭେ ସେବା କଲୁ
ବିଦ୍ୟା ନପାଇଣ ଆମ୍ଭେ ଅସାର୍ଥୁକ ଯେ ହୋଇଲୁ ।୮।
ଦ୍ରୋଣେ ବୋଇଲେ ଯେହେତୁ ଆମ୍ଭର ମନ୍ଦକର୍ମ
ତୁମ୍ଭନ୍ତ ବିଦ୍ୟା ଶିଖାଇ ଆମ୍ଭେ ହୋଇଲୁ ଅକାରଣ ।୯।
ତୁମ୍ଭନ୍ତ ଆମ୍ଭେ ବିଦ୍ୟା ଶିଖାଇଲୁ ଶୁଦ୍ଧଚିତ୍ତେ
ଗଣ୍ଠି ମୁଠି ଦୃଢ଼କରି ଦେଖାଉଁ ନିଜ ଗାତ୍ରେ ।୧୦।
ହସ୍ତ ଧରି ତୁମ୍ଭଙ୍କୁ ଜଣେ ଜଣେ ଦେଖାଇ
ତୁମ୍ଭେ ତାହା ନ ଶିଖ ଯେ ମନରେ ଗର୍ବ ବହି ।୧୧।

ତୁମ୍ଭନ୍ତ ବିଦ୍ୟା ଶିଖାଇଲେ ଅର୍ଜ୍ଜୁନ ଦେଖଇ
ଦେଖିଣ ଶିଖଇ ସେ କାହାକଇ ନ ପଚୁରଇ ।୧୨।

ଯେବଣ ନାରାଜ ଧରଇ ଫାଲଗୁନ
ମୋତେ ଗୋଚର ନୁହଇ ସେ ବୋଇଲେ ଦ୍ରୋଣମୁନି ।୧୩।
ପ୍ରଶୁରାମ ବିଦ୍ୟା ତାଙ୍କୁ ହୋଇଲା ପ୍ରାପତ
ଦେଖିଣ ଶିଖଇ ସେ ବାସବର ସୁତ ।୧୪।

ଦୁର୍ଯ୍ୟୋଧନ ବୋଇଲା ତୁମ୍ଭର ଶୁଦ୍ଧ ଚିତ୍ତେ
ତେଣୁ କରି ସମସ୍ତ କହିଲ ଯାର ପାର୍ଥେ ।୧୫।
ଦୁର୍ଯ୍ୟୋଧନ ବଚନେ ଦ୍ରୋଣେ ତୁନି ହେଲେ
ସମସ୍ତେ କୁରୁଯାରେ ଅର୍ଜ୍ଜୁନକୁ ଇଁ ହିଂସା କଲେ ।୧୬।

ସ୍ୱେଥୁ ଅନନ୍ତରେ ଶୁଣ ବଇବସ୍ୱତ ମନୁ
ବିଦ୍ୟାର ମହିମା ହୋ ଶୁଣ ଯୁବରାଜ ତନୁ ।୧୭।
ସ୍ୱେକ ଦିନରେ ଯେ ଦ୍ରୋଣେ ଉପାସ୍ୱେକ କଲେ
ସବୁ ପୁଅନ୍ତ ଘେନ ଯମୁନା ସ୍ନାହାନେ ଯେ ଗଲେ ।୧୮।
ବାଟରେ ଦେଖିଲେ ସୁସଞ୍ଚ ଶାଳ ବୃକ୍ଷେ
ଦ୍ରୋଣେ ବୋଇଲେ ସ୍ୱେଠାରେ ବୁଝିବା ପରୀକ୍ଷେ ।୧୯।

ଅର୍ଜ୍ଜୁନକୁ ବୋଇଲେ ବାବୁ ତୁ ବାହୁଡ଼ିଣ ଯିବୁ
କୃପଙ୍କର ଘରୁ ସ୍ନାହାନ ହଣ୍ଡା ଯେ ଆଣିବୁ ।୨୦।
ତିଳ ଅସ୍ୱେଂଳା ସୁସଞ୍ଚ ଅଭ୍ୟଙ୍ଗମାନ
ଭୂଇଁରେ ନ ଥୋଇ ଆମ୍ଭଠାକୁ ଆଣିବୁ ଯେ ପୁଣ ।୨୧।
ଗୁରୁଙ୍କର ବଚନେ ସେ ଚଳିଲା ଅର୍ଜ୍ଜୁନ
ବୃକ୍ଷର ତଳେ ଯାଇଁ ମିଳିଲେ ଗୁରୁ ଦ୍ରୋଣ ।୨୨।
ଦୁର୍ଯ୍ୟୋଧନ ବେନି କର ସଂକ୍ଷେପି ଧଇଲେ ଗୁରୁ ଦ୍ରୋଣ
ଦୃଷ୍ଟି ମୁଷ୍ଟି ଗଣ୍ଠି ଦୃଢ଼ ସେ କରଣ ।୨୩।
ଦୁର୍ଯ୍ୟୋଧନ କରେ ଗୁରୁ ଦିଲେ ଧନୁ ବାଣ ।୨୪।

କଭୁଷି ନାରାଜ ସେ ଗୁଣରେ ବସାଇ
ସ୍ୱେକ ଦୃଷ୍ଟିରେ ନାରାଜ ବିନ୍ଧ କୁରୁସାଇଁ ।୨୫।

ଶୁଣି ଦ୍ରିଯୋଧନ ବନ୍ଧ ପବମାନ କଲକ ଚ୍ଛେଦନ
କୁଟୁଂଗାରମାନଙ୍କର ଆନନ୍ଦ ପଞ୍ଚ ମନ ।୨୬।
ଶିଷ୍ୟନ୍ତ ଯେନ ମୁନ ପ୍ରବେଶ ଯମୁନାର କୂଳେ
ମଥା ଯୋଗାଣ ଯେନ ଅର୍ଜୁନ ସେ ବୃକ୍ଷଠାରେ ମିଳେ ।୨୭।
ଦେଖିଲେ ବୃକ୍ଷରେ ପତ୍ର ଗୋଟିଏକ ନାହିଁ
ଆଶ୍ଚର୍ଯ୍ୟ ଅର୍ଜୁନ ସେ ବୃକ୍ଷକୁ ପୁଣ ଗୁହିଁ ।୨୮।
ଦେଖିଲ ଦ୍ରୋଣଙ୍କର ପଡ଼ିଛି ପାଦଗତ
ଅର୍ଜୁନ ବୋଇଲେ ଗୁପତବିଦ୍ୟା ଶିଖାଇଲେ କୁରୁପତ ।୨୯।
ସେହି ମତ ଅର୍ଜୁନ ପାଦ ଗତ କଲ
ପାଞ୍ଚଗୋଟି ନାରାଚ ଭୂମିକି ମାଇଲ ।୩୦।
ତହିଁର ଉପରେ ସ୍ନାହାନ ସଞ୍ଚା ଥୋଇ
ଅବଲୋକନ ଶର ବନ୍ଧାଲକ ତହିଁ ।୩୧।
ବୃକ୍ଷି ଗୋଟିମାନ ଯେ ପକାଇଲ ଛେଦ
ସ୍ନାହାନ ସଞ୍ଚାମାନ ଯେନ ସେ ଚଳଇ ମନଭେଦ ।୩୨।
ଗୁରୁଙ୍କର ସନ୍ନିଧେ ନେଇ ସ୍ନାହାନ ସଞ୍ଚା ଦିଲେ
ସୁଗନ୍ଧ ତଇଳ ସେ ମଥାରେ ଲଗାଇଲେ ।୩୩।
ଯମୁନା ନଦୀରେ ସେ ପଶିଲେ ଦ୍ରୋଣେ ଯାଇ
ସମସ୍ତ ଶିଷ୍ୟମାନେ ପଶିଲେ ଝୁସାଇ ।୩୪।
ସ୍ନାହାନ କରନ୍ତେ ଯେ କୁମ୍ଭୀରେକ ଅଇଲ
ଦ୍ରୋଣ ଗୁରୁଙ୍କୁ ସେ ଯେ ଆହେରିଣ ନେଲ ।୩୫।
ସମସ୍ତ ଶିଷ୍ୟମାନେ ଡରେ ଅଇଲେ ପଳାଇ
କୁମ୍ଭୀର ଗୁରୁଙ୍କୁ ନେଉଛି ଘୋସରାଇ ।୩୬।
ଜଳରୁ ଦ୍ରୋଣଗୁରୁ ଆସି ତ ନୁଆରଇ
ରଖ ରଖ ବୋଲି ସେ ଶିଷ୍ୟଙ୍କୁ ଡାକ ଦେଇ ।୩୭।

---

୩୨।୧ ବୃକ୍ଷି ଗୋଟିମାନ ଯେ ପକାଇଲ ଛେଦ ।
୩୪।୨ ସମସ୍ତ ଶିଷ୍ୟମାନେ ପଶିଲେ ଅବଗାହ ।
୩୭।୨ ରଖ ରଖ ବୋଲିଲେ ସେ ମିଛେ ଡାକ ଦେଇ ।

ଦେଖି ଭୀମସେନ ଜଳ ଭିତରକୁ ଡେଇଁଲା
ଆଚ୍ଛେଷିଣ କରି ଯାଇଁ କୁମ୍ଭୀରକୁ ଧଇଲା ।୩୮।
ଭିଡ଼ନ୍ତେ ଜଳପ୍ରଭୁ ସେ ହୋଇଲା ନିଧନ
ଦ୍ରୋଣଗୁରୁ ବୋଇଲେ ଧନ୍ୟରେ ଭୀମସେନ ।୩୯।
ତୁହି ସେ ଯେତେବେଳେ ଦେଲୁ ଜୀବଦାନ
କିସ ଦେଇ ତୋଷ କରିବି ତୋର ମନ ।୪୦।

ଗଦା ବିଦ୍ୟା ତୋତେ ଗୋଟିଏ ଦେବଇଂ ପ୍ରସନ୍ନ
ମୋହୋର ଗଦା ବିଦ୍ୟାରେ ତୁ ସକଳ ଭୁବନ ଜିଣ ।୪୧।
ବଳରାମ ଗଦାବିଦ୍ୟା ବୋଲନ୍ତି ଜଗତେ
ଆରେ ତୋର ଗଦାବିଦ୍ୟା ପ୍ରକାଶୁ ସେହି ମତେ ।୪୨।
ଅଦ୍ଭୁତ ଗଦାବିଦ୍ୟା ଦ୍ରୋଣେ ଭୀମସେନକୁ ଦିଲେ
ତ୍ରଇଲୋକ ବିଖ୍ୟାତ ହୋଅ ଭୀମସେନକୁ ବୋଇଲେ ।୪୩।
ଗଦାବିଦ୍ୟା ପାଇଣ ସେ ସାନନ୍ଦ ଭୀମସେନ
ତତ୍କ୍ଷଂଣ ପୁଅନ୍ତ ଘେନି ଦ୍ରୋଣେ କରନ୍ତି ଗମନ ।୪୪।
ନେଉଟି ଗୁରୁ ଯେ ତରୁ ତଳେ ମିଳିଲେକ ଯାଇଁ
ଦୁର୍ଯୋଧନ ବୋଇଲା ସେ ଶାଳବୃକ୍ଷକୁ ଚାହିଁ ।୪୫।
ଆମ୍ଭେ ଯେ କାଟିଲୁ ସମସ୍ତ ପତ୍ରମାନ
ବଂଷିମାନଙ୍କୁ କେ କାଟିଲା ବୋଲଇ ଦୁର୍ଯୋଧନ ।୪୬।
ଦ୍ରୋଣେ ବଦୟନ୍ତି ଶୁଣରେ ଅର୍ଜ୍ଜୁନ
ତୋହୋର ନାରାଜ ପ୍ରାପ୍ତେତ ଦିଶଇ ବିଦ୍ୟମାନ ।୪୭।
ଅର୍ଜ୍ଜୁନ ବୋଇଲେ ମୁଁ କୃପଙ୍କ ଘରକୁ ଗଲି
ସ୍ନାହାନ ସଞ୍ଜା ଘେନିଣ ମୁଁ ଶ୍ରଦ୍ଧେଣ ଅଇଲି ।୪୮।
ବୃକ୍ଷ ଉପରକୁ ମୁଁ ଚାହିଁଲି ନୟନ
ଦେଖିଲି ପତ୍ରମାନେ ଭୂମିରେ ପତନ ।୪୯।
ନିରେଖି ଚାହିଁଲି ମୁଁ ଗୁରୁଙ୍କ ପାଦ ଗତ
ସେହି ମତ କରି ମୁଁ ବାବଲ ପେଷିଲଇଂ ଧାତ ।୫୦।

---

୪୬।୨ ବଂଷି—ଡେମ୍ଫ

ବୃକ୍ଷିମାନ ସବୁ ଛେଦ ପକାଇଲ ଭୂମି
ଶୁଣିଣ ଅନ୍ତର୍ଭୂତ ଦ୍ରୋଣ ମହାତ୍ମନ ।୫୧।
ଦୁର୍ଯୋଧନ ବଦନ ଚାହିଁ ବୋଲନ୍ତି ବଚନ
ସେହୁ ବିଦ୍ୟା ଅବା କାହୁଁ ଅର୍ଜିଲ୍ଲି ଅର୍ଜୁନ ।୫୨।
ତୁମ୍ଭେମାନେ ଆମ୍ଭଙ୍କୁ ବୋଲୁଥାଅ ଜଗତେ
ସବୁ ସହୁଁ ଆମ୍ଭେ, ତୁମ୍ଭେ ସହୁଁ ଶିଷ୍ୟପୁତେ ।୫୩।
ଅର୍ଜୁନଙ୍କୁ ଚାହିଁଣ ଯେ ବୋଇଲେ ଗୁରୁ ଦ୍ରୋଣ
ସେହୁ ଭଗଭର ଉଶ୍ୱାସିବାକୁ ତୁହିଂ ସେ ଯେ ଜନ୍ମ ।୫୪।
ଧୃଶାସନ ବୋଇଲେ ଗୁରୁ ହେ ଅର୍ଜୁନ ଆଜ୍ଞାତ ମେଣ୍ଟିଲ୍ଲି
ସ୍ନାହାନ ସଞ୍ଚାମାନ ସେ ଭୂମିରେ ଥୋଇଲ୍ଲି ।୫୫।
ଅର୍ଜୁନ ବୋଇଲ୍ଲି ଗୁରୁ ହେ ଧୃଶାସନ ବୋଇଲ୍ଲି ଯେମନ୍ତ
ପଞ୍ଚ ନାରାଜ ଭୂମିକି ମାଇଲ ତୁରିତ ।୫୬।
ତହିଁ ଉପରେ ସ୍ନାହାନ ସଞ୍ଚା ମୁଁ ଥୋଇଲ
ବାବଲ ଶରେ ସବୁ ବୃକ୍ଷମାନ ତ ଛେଦିଲ ।୫୭।
ଗୁରୁଙ୍କର ଆଜ୍ଞା ମେଣ୍ଟଇ ଯେବଣ ଶିଷ
ବିଦ୍ୟା ଅପ୍ରାପତ ହୋଇ ଅଳପେ ଯାଇ ସେ ନାଶ ।୫୮।
ଦ୍ରୋଣ ଦେଖିଲେ ନାରାଜ ମ୍ଭନ ବସିଛି ଭୂମିର
ଦେଖିକରି ଚକିତ ଯେ ହୋଇଲେ କୁରୁବୀର ।୫୯।
ପରମ ସାନନ୍ଦ ହୋଇଣ ଆନନ୍ଦ ପଞ୍ଚ ମନ
ସକଳ ବିଦ୍ୟା ତୋତେ ହୋଉରେ ଅରଜୁନ ।୬୦।
ସନ୍ତୋଷ ହୋଇଣ ଅର୍ଜୁନଙ୍କୁ ବର ଦିଲେ
ପୁଅନ୍ତ ଘେନ ଦ୍ରୋଣ ଇନ୍ଦ୍ରପ୍ରସ୍ଥକୁ ଗଲେ ।୬୧।
ଲକ୍ଷେକ ପାତିକରି ଶରମାନ ବିନ୍ଧନ୍ତି
ସେହି ଧନୁ ପୁଣ ହାତ ସୂନ୍ଦ ଯେ କରନ୍ତି ।୬୨।
ଯେବଣ ନାରାଜ ବିନ୍ଧଇ ଅର୍ଜୁନ
ଦେଖି କୁରୁବୀରଙ୍କର ହୃଦୟ କମ୍ପମାନ ।୬୩।

---

୬୨।୧ ସେହିଧନୁଂ ଶର ସେ ବନ୍ଧନ୍ତି ଜଡପ୍ରତି ।
୬୨।୨ ସୂନ୍ଦ—ହସ୍ତରେ ଶର ଯୋଜନା କରନ୍ତି ।

କହନ୍ତ ଅଗସ୍ତି ପଣ୍ଡିତ ବ୍ରହ୍ମଚେବନ୍ତ
ବଇବସ୍ୱତ ମନୁ ଶୁଣନ୍ତ ଅମୃତ ରସ କଥା ।୬୪।
ନମାମି ସିଦ୍ଧ ସାରେଳା ଜଙ୍ଗରପୁରବାସୀ
କଳିକାଳ ପାତକ ତୋହୋରେ ହୋଇପୂ ଧ୍ୱଂସି ।୬୫।
ତୁ ସେ ବ୍ରହ୍ମଜ୍ଞାନୀ ଅନାଦ୍ଧ ଅପର୍ଣ୍ଣା ସାରେଳା ଗୋସାମଣୀ
ଅଦୃଷ୍ଟି ଅଶ୍ରୁତ ତୁ ବଖାଇଲୁ ଆଣି ।୬୬।
ଜନ୍ମେ ଜନ୍ମେ ମୁହିଁ ନୋହଇ ସାହାସ୍ର ବାଘ
ପଣ୍ଡିତ ଜନ ମଧ୍ୟେ ମୁଁ ନପଶିଲି ପ୍ରସିଦ୍ଧି ।୬୭।
ସେ ସିଦ୍ଧ ଦେବୀ ମୋତେ ପ୍ରସନ୍ନ ହୋଇଲେ
ଅକଳନ୍ତା ଶ୍ରୀ ମହାଭାରତ ମୋତେ ଆଜ୍ଞା ଦେଲ ।୬୮।
ଜଙ୍ଗରପୁରବାସିନୀ କୃପାଜଳ ନନ୍ଦନୀ
ତାହାର ଆଜ୍ଞା ପ୍ରମାଣେ ମୁଁ ହୋଇଲ ଶୁଦ୍ରମୁନି ।୬୯।
ସେ ସିଦ୍ଧ ଦେବୀ ଚରଣେ ମୋର ସେବା
ଶୁଦ୍ରମୁନି ସାରେଳା ଦାସକୁ ଗତି ମୁକ୍ତି ଦେବା ।୭୦।

□□□

# ଗୂହକର ପଦାନ୍ତି

**ବଳରାମ ଦାସ**

ରଥରେ ବସିଣ ରାମ ତତ୍ତକ୍ଷ ଯେ ଗଲେ
ସରସ୍ୱତୀ ନଦୀ ତୀରେ ତକ୍ଷଣେ ମିଳିଲେ ।୧।
ତାହା ପାର ହୋଇ ସେ ପଶିଲେ ଘୋର ବନ
ଗଙ୍ଗାନଦୀ କୂଳେ ରାମ ହୋଇଲେ ତକ୍ଷଣ । ୨ ।
ଶୃଙ୍ଗବେର ପୁର ଅଟେ ତହିଁର ନିକଟ
ଗୂହ ନାମେ ଶବର ବସାଇଁ ତହିଁ ରାଷ୍ଟ୍ର । ୩ ।

ଯେ ଶବର ଅଟଇ ଯେ ଶ୍ରୀରାମ ମଇବ
ଶ୍ରୀରାମ ପାଶେ ମିଳିଲା ଆସି ସେ ତୁରିତ । ୪ ।
ସଙ୍ଗରେ ବଳ ତାହାର ସୈନ୍ୟ ଅପ୍ରମିତ ।
ବିପରୀତ ବେଶେ ଯେ ସେମାନେ ମେଳେଛନ୍ତି । ୫ ।
କଣ୍ଠରେ ତାଡ଼କ ଯେ ବନ୍ଧଆ ଘୁଞ୍ଜି ଘୁଞ୍ଜି
ଲଲାଟର ଶୋଭାକୁ ଯେ ଗୁଞ୍ଜାମାଳ ରଞ୍ଜି । ୬ ।
କେ ଖୋଷା ପାରିଛନ୍ତି କେହୁ ବାନ୍ଧେ ଜୁଡ଼ା ବାନ୍ଧି
କାହାର ବେଣୀ ଅଛଇ କେହି ମୁଣ୍ଡ ବାନ୍ଧି । ୭ ।
ପିଠି କଡ଼କ କାହାର ଲମ୍ବି ଅଛି ଜଟ
ମନ୍ଦାର ଫୁଲେ ସୁନ୍ଦର ଦିଶେ କାହା ଜଟ । ୮ ।
କେ କାଣୀ କଉଡ଼ିମାନ ମାଳ ମାଳ କରି
ଶରଧା ନମନ୍ତେ କେ କଟିରେ ଅଛି ଭରି । ୯ ।
କାହାର ବାହୁରେ ଯେ ଟସର ରଙ୍ଗ ସୂତା
ଅଜଗର ଚର୍ମ କାହା ଗଳାରେ ପଇତା । ୧୦ ।
ନାକ ଫୋଡ଼ି ପିତଳ ମୁଦି ଭରି ଅଛଇ
ଲୁହାଶିକୁଳି କାହାର ଭୁଜରେ ଶୋଭାପାଇ । ୧୧ ।
କାହାର ଶିରେ ଟୋପର ମୟୂରର କଣ୍ଠା
ଭାଲୁଙ୍କର ଚର୍ମେ କେହୁ ମଣ୍ଡି ଅଛି ଅଣ୍ଟା । ୧୨ ।
କାହା ଅଣ୍ଟାରେ ଘଣ୍ଟାମାଳ ଧ୍ୱନି କରି
କାହାର ଚରଣେ ପୁଣି ବାଜଇ ଘାଗୁରି । ୧୩ ।
ଖାଙ୍କର କେଶ କାହାର ଢିମା ଢିମା ଆଖି
ଭଲ ଭଲ ଲୋକେ ଯେ ଡରନ୍ତି ତାଙ୍କୁ ଦେଖି । ୧୪ ।
କାହାର ନଣ ଆରକ ଦେହରେ ଲଗାଇ
ପିଙ୍ଗଳ କେଶ ଦେଖିଲେ ମନେ ହାସ ପାଇ । ୧୫ ।
କାହା ନାକଚୁଡ଼ାରେ ବାହାରି ଦିଶେ ବାଳ
ତହିଁ ଗୁନ୍ଥା ହୋଇଲା ପ୍ରାୟେ ଦିଶେ ଗୁଞ୍ଜାମାଳ । ୧୬ ।
ଦେହର ରୋମକୁ ଯେ ଦେଖିଣ ଭୟଙ୍କର
କାହାରି କାହାର ଭାଷା ବୁଝି ତ ନପାରି । ୧୭ ।

କାହାର ବାଳରେ କେହ୍ନ ଜଟ ପାରୁଅଛି
ଖଣ୍ଡି ଖଣ୍ଡି କରି ପୋଡ଼ ମାଂସ କେ ଖାଉଛି । ୧୮ ।
ବିଭୂତିରେ ବିଲେପନ କାହାର ଶରୀର
ଗବଛେଲେ କାହା ମୁଣ୍ଡବାଳ ଜରଜର । ୧୯ ।
କାହା ଶରୀରରେ ଶୋଭାପାଏ ଇଟାଗୁଣ୍ଡି
ରଙ୍ଗ ମାଟି ଯେନ କେ ଶରୀର ହୋଏ ମଣ୍ଡି । ୨୦ ।
କେହ୍ନ ଲଟା ଗୁଡ଼ଆଇ ହୋଇଥାଇ ପାଏ
ହାଣ୍ଡିଭଙ୍ଗା ଡାଳକୁ ଯେ ଘର୍ଙ୍ଗିଣ ଥୋକାଏ । ୨୧ ।
ଧାମଣା କାଠର କେହ୍ନ କରିଣ କୋଦଣ୍ଡ
ଗୋରୁଚମ ତୂଣ ଯେ ନାହାଳ ବେନ କାଣ୍ଡ । ୨୨ ।
ଏକ କରେ କୁଠାର କେ ଧନୁ କରେ ଘେନ
କେ କରେ ଘେନଅଛଇ ଘଙ୍ଗ ଡାଳ ବେନ । ୨୩ ।
ମୂଷଳ ମୁଦ୍‌ଗର ଶର ଯାଠିକ ପ୍ରହାର
ଶିକଳ ଲଗାଇ କେହ୍ନ କୁକୁରକୁ ଧରି । ୨୪ ।
ଅଣ୍ଟାର ମେଖଳା କେହ୍ନ ଝିଙ୍କିଣ ଝୁଙ୍କନ୍ତି
ତୂଣୀରରୁଁ କାଣ୍ଡ କେ କାଢ଼ିଣ ସଜଖନ୍ତି । ୨୫ ।
କାଉଗଉ କରଇ କେ ବାଟେ ଯାଉଁ ଯାଉଁ
ମାର ମାର ବୋଲି କେ ଯୁଝନ୍ତି ଧାଉଁ ଧାଉଁ । ୨୬ ।
ଦଶ ଲକ୍ଷ ପଦାତି ଘେନଣ ଗୃହବୀର
ଦରଶନ କଲା ଆସି ଶ୍ରୀରାମ ପୟର । ୨୭ ।

□□□

# କପୋତ ପକ୍ଷୀ ଗୁରୁ ମୋର

**ଜଗନ୍ନାଥ ଦାସ**

ଶୁଣ ସ୍ୱଜନ ସାବଧାନେ । କପୋତ ପକ୍ଷୀ ଘୋରବନେ ।୧।
କପୋତ୍ତି ସଙ୍ଗେ ସ୍ନେହଭରେ । ଅରଣ୍ୟେ ଗୃହ ବାସ କରେ ।୨।
କପୋତ୍ତି ସଙ୍ଗେ ଭୋଗ ଆଶେ । ଦୃଢ଼ ଯନ୍ତ୍ରିତ ମୋହ ପାଶେ ।୩।
ନୃତ୍ୟ କରନ୍ତି କ୍ରୀଡ଼ାରଙ୍ଗ । ନିମିଷେ ନ ଛାଡ଼ନ୍ତି ସଙ୍ଗ ।୪।
ଦୃଷ୍ଟିକି ଦୃଷ୍ଟି ଅଙ୍ଗେ ଅଙ୍ଗ । ବୁଦ୍ଧିକି ବୁଦ୍ଧି କରି ସଙ୍ଗ ।୫।
ସ୍ନେହ ବଚନ ସଙ୍ଗ ମେଳେ । କାଳ ବଞ୍ଚନ୍ତି କୁତୂହଳେ ।୬।
ସଙ୍ଗ ବିଚ୍ଛେଦ ତିଳ ମାତ୍ରେ । କେବେହେଁ ନ ଦେଖନ୍ତି ନେତ୍ରେ ।୭।
ଏକତ୍ର ଭୋଜନ ଶୟନେ । ଏ ରୂପେ ବିହରନ୍ତି ବନେ ।୮।
କପୋତ୍ତି ଚିତ୍ତେ ଯାହା ସ୍ମରେ । କପୋତ ଆଣଇ ତତ୍ପରେ ।୯।
ସେବକ ପ୍ରାୟେ ଆଣି ଦେଇ । ଯାହା ତ ଘରଣୀ ମାଗଇ ।୧୦।
ଏମନ୍ତ କେତେ ଦିନ ଗଲା । କପୋତ୍ତି ଗର୍ଭ ଉପୁଜିଲା ।୧୧।
କେତେକ ଦିନ ଗର୍ଭେ ରହି । ଜନ୍ମ ହୋଇଲେ ଡିମ୍ବ ଦୁଇ ।୧୨।
ପକ୍ଷୀ ପକ୍ଷିଣୀ ସ୍ନେହ ବଶେ । ଡିମ୍ବ ତାପନ୍ତି ପୁତ୍ର ଆଶେ ।୧୩।
ପୁଣିହିଁ କେତେ ଦିନ ଅନ୍ତେ । ଫୁଟି ବାଳକ ଉପୁଜନ୍ତେ ।୧୪।
ଅତି କୋମଳ ବେନି କାୟେ । ଦେଖି ସାନନ୍ଦ ବାପ ମାୟେ ।୧୫।
ସଭ୍ରମ ଚିତ୍ତେ ସେ କପୋତ୍ତି । ନିରତେ ବାଳକ ପୋଷନ୍ତି ।୧୬।
ପୁତ୍ରଙ୍କ କୋମଳ ବଚନ । ଶୁଣନ୍ତେ ମୁଦ୍ରିତ ଲୋଚନ ।୧୭।
ପତଙ୍ଗ ଦେଇଣ ଆହାର । ପୋଷନ୍ତି ହୋଇ ସ୍ନେହଭର ।୧୮।
ଏମନ୍ତେ ବେନି ଶିଶୁ ପାଳି । ପକ୍ଷୀ ସ୍ୱଭାବେ ରୋମାବଳୀ ।୧୯।
ଉଠନ୍ତି ବେନି ପୁତ୍ର ଦେହେ । ଦେଖି ସାନନ୍ଦ ବାପମାଏ ।୨୦।
ପାଳନ୍ତି ଅତି ସ୍ନେହଭରେ । ବାଳକ କୋମଳ ଆହାରେ ।୨୧।
ବିଷ୍ଣୁର ମାୟାବଳେ ଯନ୍ତ୍ରୀ । ପାଳନ୍ତି କପୋତ କପୋତ୍ତି ।୨୨।

ଆହାର ଅର୍ଥେ ଏକ ଦିନେ । ବନେ ପଶିଲେ ବେନିଜନେ । ୨୩ ।
ଖୋଜନ୍ତି କୋମଳ ଆହାର । ଏମନ୍ତେ ଶୁଣ ନୃପବର । ୨୪ ।
ପକ୍ଷୀ ବାଳକ ନିଜ ସ୍ଥାନେ । ବ୍ୟାଧ ମିଳିଲା ଘୋରବନେ । ୨୫ ।
ବୃକ୍ଷୁ ଉତ୍ତୁରି ବେନି ବାଳେ । ବନେ ଚରନ୍ତି ବୃକ୍ଷ ମୂଳେ । ୨୬ ।
ଶବର ଦେଖି ତାହା ବେଗେ । ଜାଲ ପାତିଲା ଗୂଢ଼ଦେଗେ । ୨୭ ।
ଉପରେ ବାନ୍ଧିଲା ଦଉଡ଼ି । ପକ୍ଷୀଙ୍କି ଆଣିଲା ଘଉଡ଼ି । ୨୮ ।
ଆହାର ଦେଇ ଜାଲ ତଳେ । ଅନ୍ତରେ ବସିଲା ନଗୋଳେ । ୨୯ ।
ପକ୍ଷୀ ବାଳକ ଭୟ ପାଇ । ବେଗେ ପଶିଲେ ଜାଲେ ଯାଇ । ୩୦ ।
ଆହାର ଦେଖିଲେ ନୟନେ । ପଡ଼ିଲେ ଲୁବ୍‌ଧକ ବନ୍ଧନେ । ୩୧ ।
ତତ୍‌କ୍ଷଣେ କପୋତ କପୋତୀ । ଆସି ମିଳିଲେ ବୃକ୍ଷ କତି । ୩୨ ।
ତୁଣ୍ଡେ ଆହାର ଦୃଢ଼େ ଧରି । ଲେଉଡ଼ନ୍ତି ବୃକ୍ଷେ ଅନୁସରି । ୩୩ ।
ନଦେଖି ଗୃହେଁ ଦଶଦିଗେ । ପୁଣି ଦେଖନ୍ତି ଭୂମି ଭାଗେ । ୩୪ ।
ବନ୍ଧନ ଜାଲ ମଧ୍ୟେ ଦୃଢ଼େ । ବେନି ବାଳକ ଧଡ଼ପଡ଼େ । ୩୫ ।
ରଡ଼ନ୍ତି ତ୍ରାଣରେ ବିକଳେ । ନାଦକରନ୍ତି କୋଳାହଳେ । ୩୬ ।
ଦେଖି କପୋତୀ ଦୃଢ଼ ଚିତ୍ତେ । ଭୂମିରେ ପଡ଼ି ମୋହଗତେ । ୩୭ ।
ବାଳକ ଦେଖି ବୃକ୍ଷତଳେ । କାନ୍ଦଇ ଜୀବନ ବିକଳେ । ୩୮ ।
ବାଳକ ସ୍ନେହଭରେ ଆଶେ । ଡେଇଁପଡ଼ିଲା ଜାଲ ପାଶେ । ୩୯ ।
ପୁତ୍ରଙ୍କ ମୁଖେ ମୁଖ ଦେଇ । ଦେଖି କପୋତ ବିସୁରଇ । ୪୦ ।
ମୁଁ ଏବେ ଏକା ବୃକ୍ଷେ ଥାଇ । କେମନ୍ତେ ଧରିବଟି ଦେହି । ୪୧ ।
ଏମନ୍ତେ କରଇ ରୋଦନ । କ୍ଷଣେକ୍ଷଣକେ ଅଚେତନ । ୪୨ ।
ପଡ଼ଇ ପଣ ପୁଣ ତଳେ । ବସଇ ପୁଣି ବୃକ୍ଷଡ଼ାଳେ । ୪୩ ।
ପ୍ରାଣୁ ଅଧିକ ମୋର ସୁତେ । ଚଢ଼ିଲେ ଶବର ଆୟତ୍ତେ । ୪୪ ।
ପତ୍ନୀ ପଡ଼ିଲା ଜାଲ ମଧ୍ୟେ । ପ୍ରାଣ ଧରିବି କେଉଁ ସାଧେ । ୪୫ ।
ପତ୍ନୀ ମୋହର ପ୍ରାଣସଖା । ସେ ମୋତେ କରିଗଲା ଏକା । ୪୬ ।
ତାହାର ଗୁଣ ଅଛି ଯେତେ । ଚିତ୍ତେ ଧରିବି ମୁଁ କେମନ୍ତେ । ୪୭ ।
ସେ ମୋର ଜୀବନ ଯୁବତୀ । ତା ବିନୁ ମୋର କିବା ଗତି । ୪୮ ।
ବିଧି ହୋଇଲା ବାମ ମୋର । ଆପଦେ ବୁଡ଼ିଲା ମୋ ଘର । ୪୯ ।
ଏତେ କଷଣେ ବନେ ଥାଇ । ମୋ ପ୍ରାଣ ରହିବ ନଯୋଗାଇ । ୫୦ ।

ଏ ବନେ ଘୋର ଗୃହାପଣେ । ମୋ ଜନ୍ମ ଗଲା ଅକାରଣେ । ୫୧ ।
ଗୃହ ଆଶ୍ରମେ ମୋ ପୀରତ । କାମେ ନ ପୂରିଲା ମୋ ମତ । ୫୨ ।
ବିଧାତା ମୋତେ ବାମ ହୁଏ । ବନ୍ଧନେ ପଡ଼ିଲେ ମୋ ପୁଏ । ୫୩ ।
ଏ ପତିବ୍ରତା ଶିରୋମଣି । ମୋହର ପ୍ରାଣର ଘରଣୀ । ୫୪ ।
ଆହାର ପାଣି ଯେତେବେଳେ । ମୁହିଁ ଭୁଞ୍ଜଇ ବୃକ୍ଷଡ଼ାଳେ । ୫୫ ।
ତେବେ ସେ ଭୁଞ୍ଜେ ମୋ ଘରଣୀ । ମୋ ବିନୁ ନ ଭକ୍ଷଇ ପାଣି । ୫୬ ।
ସେ ମୋତେ ଛାଡ଼ି ଗୃହ ମଧେ । ସ୍ୱର୍ଗେ ଚଳିଲା ମନ ସାଧେ । ୫୭ ।
ସକଳ ସୁଖ ମୋର ଗଲା । ପୁତ୍ର ସଙ୍ଗତେ ପତ୍ନୀ ମଲା । ୫୮ ।
ଏମନ୍ତ ବୋଇଲା ବିଳାପେ । ପୁଣି କାନ୍ଦଇ ମନସ୍ତାପେ । ୫୯ ।
ଜୀବନ ନ ପାରିଲା ଧରି । ଜାଲେ ପଡ଼ିଲା ହାହାକରି । ୬୦ ।
ଦେଖି ଶବର ତୋଷମନ । ପିଞ୍ଜରେ ଥୋଇଲା ବନ୍ଧନ । ୬୧ ।
କପୋତ କପୋତି ବାଳକ । ଘେନିଣ ଚଳଇ ଲୁବ୍ଧକ । ୬୨ ।
ବେଗେ ମିଳିଲା ନିଜ ପୁରେ । ଶୁଣ ରାଜନ ତୋଷଭରେ । ୬୩ ।
ଏ ରୂପେ ସ୍ନେହେ ଅବଲମ୍ବୀ । ସଂସାରେ ବନ୍ଧନ କୁଟୁମ୍ବୀ । ୬୪ ।
ଦୁଃଖ ସହଇ ଏ ଶରୀରେ । ନିତ୍ୟ କୁଟୁମ୍ବ ପୋଷିବାରେ । ୬୫ ।
ନରତେ ଆକୁଳ ହୃଦୟ । ଏଣୁ ବୋଲଇଂ ଦୁଃଖମୟ । ୬୬ ।
ଧର୍ମେ ବଞ୍ଚିତ କଳେବର । ମଜ୍ଜଇ ଏ ଘୋର ସଂସାର । ୬୭ ।
ତୁ ଏବେ ବୁଝି ମୋ ବଚନ । ହେ ରାଜା ସ୍ଥିରକର ମନ । ୬୮ ।
ଦେଖ ମନୁଷ୍ୟ ଦେହ ମୋର । କେବଳ ମୁକତିର ଦ୍ୱାର । ୬୯ ।
ଏ ଦେହ ପାଇ ମହୀତଳେ । ହେଲେ ତରନ୍ତି ଭବଜଳେ । ୭୦ ।
ଦୁର୍ଲ୍ଲଭ ପାଇ ଏ ଶରୀର । କୁଟୁମ୍ବେ ଦୃଢ଼ମତି ଯା'ର । ୭୧ ।
ଧନ ବଞ୍ଚଇ ଦୁଃଖେ ସୁଖେ । ଅନ୍ତେ ପଡ଼ଇ କୁମ୍ଭୀପାକେ । ୭୨ ।
ଏ ଭାବେ ବୁଝିଲ ସଂସାର । ଏଣୁ କପୋତ ଗୁରୁ ମୋର । ୭୩ ।

□□□

# ବାରମାସୀ କୋଇଲି

ଶଙ୍କର ଦାସ

ଆରେ ବାବୁ ଗୃପଧାଶ୍ୱ,
କି ଦଣ୍ଡ ହେଲା ତୋହର ।
କାନ୍ଦି କଉଶଲ୍ୟା ବୋଲନ୍ତି କୈକେୟୀ,
ଅରଜିବ କେଉଁ ଶିଶ୍ୱ ଲୋ,
କୋଇଲି ଶୁଣ ଲୋ ।୧।

ଏହି ମଗୁଶିର ମାସ,
କାକର ପଡ଼େ ବିଶେଷ ।
ଶୀତଳ ପବନ ବହେ ଘନ ଘନ
ମୋ ପୁତ୍ର କରିବ କିସ ଲୋ ।୨।

ପୁଷମାସେ ବଡ଼ ଶୀତ,
କଷ୍ଟ ଦିଏ ଅପ୍ରମିତ ।
ବନା ବସନରେ ବୃକ୍ଷ ବକଳରେ
କି ଦୁଃଖ ନହେବ ଜାତ ଲୋ ।୩।

ମାଘରେ ତହୁଁ ଅଧିକ,
ଗରିବ ଦୁଃଖଦାୟକ ।
ଅମୂଲ୍ୟ ସୁପାତ୍ତି ତେଜି ରଘୁପତି
ବୁଲୁଥିବେ ବନଯାକ ଲୋ ।୪।

ଫଗୁଣେ ଫଗୁ ଖେଳରେ
ମାଛିଥାନ୍ତି ଘରେ ଘରେ
ମୋ ଅନ୍ଧୁଣୀଧନ ମୋଠୁଁ ହୋଇ ଭିନ୍ନ
ଭସାଇଲା ଶୋକମାରେ ଲୋ ।୫।

ଚଇତ୍ର ମାସରେ ଖରା,
ନୀରସ କରଇ ଧରା ।
ଶରୀରରୁ ଝାଳ ବହେ ଅନର୍ଗଳ
ପବଣ ହୁଏ ପାବକ ଲୋ ।୬।

ବଇଶାଖ ଖରା ଚାହିଁ,
ବାହାରକୁ ନୋହେ ଯାଇ
କେଉଁ ବୃକ୍ଷ ମୂଳେ ଜୀବନ ବିକଳେ
ଥିବ ମୋର ପୁତ୍ର ରତ୍ନ ଲୋ ।୭।

ଜ୍ୟେଷ୍ଠେ ମୋ ଜ୍ୟେଷ୍ଠ ନନ୍ଦନ,
ସହ ଜାନକୀ ଲକ୍ଷ୍ମଣ
ନାନା ପକ୍ୱଫଳ ଖୋଜି ବୁଲୁଥିବେ
ବିସ୍ତର ଏ ବିଡ଼ମ୍ବନ ଲୋ ।୮।

ଆଷାଢ଼ ମାସରେ ମେଘ
ଗରଜଇ ଯେହ୍ନେ ବାଘ
ବେଳେ ବେଳେ ଦୃଶ୍ୟ ହୁଅଇ ଅଦୃଶ୍ୟ
ଘୋଟିଯାଏ ଚଉଦିଗ ଲୋ ।୯।

ଦେଖ ଏ ଧାରା ଶ୍ରାବଣ
ଜଳ ପଡ଼େ ଅନୁକ୍ଷଣ
ଘର ଘାଟ ନାହିଁ ମୋ ଦୁଃଖୀ ସନ୍ତାନ
କରୂପେ କାଟିବ ଦିନ ଲୋ ।୧୦।

ଭାଦ୍ରବ ହେଲେ ପ୍ରବେଶ,
ସୁନିର୍ମଳ ଦଶଦିଶ ।
ଅତି ସୁକୁମାରୀ ଜନକକୁମାରୀ
ମନେ ଭାବୁଥିବ କିସ ଲୋ ।୧୧।

ଆଶ୍ୱିନେ ଚନ୍ଦ୍ର କିରଣ,
କରଇ ମନ ହରଣ
କେତେମତେ କେତେ ଉତ୍ସବ କରନ୍ତେ
ଘରେ ଥିଲେ ରଘୁବୀର ଲୋ ।୧୨।

ଏ ମଦ୍ବା କାର୍ତ୍ତିକ ମାସ
ଭଣିଲେ ଶଙ୍କର ଦାସ
ସୀତା ସଙ୍ଗେ ଯେନ ରଘୁକୁଳମଣି
ଭୋଗକଲେ ବାରମାସ ଲୋ ।୧୩।

## ଷଡ଼ଋତୁ-ବର୍ଣ୍ଣନା

( ରହସ୍ୟମଞ୍ଜରୀ )

**ଦେବଦୁର୍ଲ୍ଲଭ ଦାସ**

ଏ ମଦ୍ବା ଗ୍ରୀଷମ ଋତୁ ବୈଶାଖର ଶେଷ,
ବହିଲା ଝଞ୍ଜା ପବନ କୃଶାନୁ ବତାଶ ।
ପାଚିଲେ ଆମ୍ବ, ପଣସ ତାତିଲେ ସକଳ
ଜଳିଲା ଶରୀର ମୋ ଝଲିଲା କଳେବର । ଘୋଷା ।
ମୁଁ ଗୋ ମଲି ମଲି ମଲି,
କାନ୍ତ ମୋ ଉପେକ୍ଷି ଗଲେ କଉଁ ଦୋଷ କଲି ।୧।
ଗମ୍ଭୀର ଘରରେ ଗୋ ଗ୍ରୀଷମେ ନୋହେ ଶୋଇ
ଦକ୍ଷିଣ ମେଲା ମନ୍ଦରେ ପ୍ରଭୁ ସଙ୍ଗେ ରହି ।
କର୍ପୂର ଚନ୍ଦନ ସୁଶୀତଳ ଜଳେ ଗୋଳି
ସ୍ୱାମୀ ସଙ୍ଗେ ବଳଧ ବନୋଦେ ବୋଲାବୋଲି ।୨।
ଫୁଟି ତାଳସଜ ପଣା ପଇଡ଼ କଦଳୀ
କର୍ପୂର ମରିଚ ଖଣ୍ଡ ସିଙ୍ଗଡ଼ା ତାମ୍ବୁଳ ।
ମଣୋହି କରଣ ସେହୁ ଖୁଆଇଣ ଖାଇ
ସୁଖ ପାଇ ସ୍ୱାମୀ ଭୁଜ ପଞ୍ଜରେଣ ଶୋଇ ।୩।

ଋଷଭ ସମ୍ପୂର୍ଣ୍ଣେ ଆଖି ଆଷାଢ଼ର ଅନ୍ତେ
ଶ୍ରାବଣ ପ୍ରବେଶ ଗୋ ଜଳଦ ଋତୁ ହୋନ୍ତେ,
ଗାଜିଲେ ଗଗନେ ମେଘ ସାଜିଲେ ବରଷା
କି ଜାଣି ନିବିଡ଼ ଘୋର ଅନ୍ଧକାର ନିଶା ।୪।
ଘଡ଼ଘଡ଼ ଉପରେ ପଡ଼ଇ ଚଡ଼ଚଡ଼
ଚଡ଼ଚଡ଼ ଉପରେ ନିର୍ଘାତ ପଡ଼େ ମାଡ଼,
ବିଜୁଳି ଝମକେ ଗୋ ଚମକି ଉଠେ ହିୟା
କେସନେ ବଞ୍ଚିବି ମୋର କୋଳେ ନାହିଁ ନାହା ।୫।
କମଳିନୀ ବିକସିଲେ ଅବନୀ ଉଲ୍ଲସି
ମାତିଲେ ମଣ୍ଡୂକେ ଯେ ଡାହୁକ ଡାକେ ମିଶି,
ନଦୀ ଯୋଡ଼ ବଢ଼ିଲେ, ଜଡ଼ିଲେ ସୁନାଗଣି
ସୁବେଶ ଯୁବତୀ କାନ୍ତ ପଥ ଅନୁସରି ।୬।
ପ୍ରବାସୀ ପୁରୁଷମାନେ ସର୍ବ କାର୍ଯ୍ୟ ଛାଡ଼ି
ଘରକୁ ଆଇଲେ ପ୍ରିୟା ଗୁଣ ମନେପଡ଼ି,
ଏକମାତ୍ର ମୋର କାନ୍ତ ନଇଲେ ମୋ ପାଶ
ନିଚୟେ ଜାଣିଲି ମୋର ତେଜିଲେ ମୁହିଁ ଆଶ ।୭।
ଭାଦ୍ରବର ଅନ୍ତେ ସଖି ଆସିଣ ପଶନ୍ତେ
ପ୍ରବେଶ ଶରଦ ଋତୁ ପ୍ରତେଜ ଆଦିତ୍ୟ,
ଗଗନୁ ଝଡ଼ିଲା ହିମ, ମଣ୍ଡି ଫଣୀ ପଶେ
ବରଷା ବଞ୍ଚାଇ ମେଘ ନାନାବର୍ଣ୍ଣ ଦିଶେ ।୮।
ଉତ୍ତରୁ ଅଇଲା ଶୀତ ବିକାନ୍ତ କୁମାରୀ
କାନ୍ତ ଥିଲା କାମିନୀଙ୍କି ଦୂରୁ ଅପସରି,
ଫୁଟିଲେ କୈରବ କିଆଁ ଚନ୍ଦ୍ରକାନ୍ତ ବଢ଼େ,
ଶ୍ରୋଣେନ୍ଦା ରତ୍ତି ଆରତେ ଶ୍ରୋଣେନ୍ଦ୍ରୀ କି ଲେଢ଼େ ।୯।
କାର୍ତ୍ତିକ ସରନ୍ତେ ସଖି ମଗୁଶିର ଆସେ
କାକର ପଡ଼ିଲା ହିମ ଋତୁ ପରକାଶେ,
ଦହିଲା କମଳବନ ବହିଲା ଉତ୍ତରୀ,
ସୁସ୍ଥିର ହୋଇଲା ସିନ୍ଧୁ ସଧୀର ଲହରୀ ।୧୦।

ମରୁଆ ହସିଲା କୁନ୍ଦ ଦେଖିଣ ବକାଶ
ଗାଇଲେ ଗାଆନ୍ତା ଗୀତ ଗୃଣ୍ଡକେଶୀ ରସ,
ଭୁଟିଗଲେ ନଦୀ ସବୁ, ଫିଟିଗଲେ ବାଟ,
ଧନ ଅସି ପାହିଗଲା କାନ୍ତ ନାହିଁ ଭେଟ ।୧୧।
ସିଂହଡ଼ା କେସର ସଖି ଗୁଆ ଘିଅରେ ପୋଇ
କର୍ପୂର ମରିଚ ମେଲି ମିଠା ଦୁଧେ ମୋହି,
ସାରଆଖଣ୍ଡ ମିଶାଇ ବଟା ଭରି ଥୋଇ
ଶୟନ ପଲଙ୍କେ କାନ୍ତ ଅଧରେ ଯୋଗାଇ ।୧୨।
ପୁଷର ଅନ୍ତରେ ସଖି ମକର ପ୍ରଖ୍ୟାତ
ପ୍ରବେଶ ଶିଶିର ଋତୁ ପବନ ଜଗତ,
ମକର ସ୍ନାହାନ ଜନେ ଧର୍ମ ଅର୍ଥେ କରି
କୁହୁଡ଼ି ପଡ଼ିଲା ଗୋ ଜାଡ଼ିଲା ବସୁନ୍ଧରୀ ।୧୩।
ଫୁଟିଲା ମାଧବୀ ଗୋ ଭୁଟିଲା କଇଁ ଫୁଲ
ଉଠିଲା କଞ୍ଚନ କଢ଼ି କାମ-ଶର ଭୁଲ,
ଲେଉଟିଲା ଉତ୍ତର ପବନ ନିଜ ସ୍ଥାନ
ଉଠିଲା ଲହରୀ ସିନ୍ଧୁ ଅନନ୍ତର ଫେନ ।୧୪।
କାକଗର୍ଭ ଦେଖି ସଖି ହୋଇଲି ଚକିତ
ଏତେବେଳେ ନ ଭେଟିଲି ଗଉରୀ-ବାରତ,
କୁରୁବେଲ ଚଉଁରରେ ଅତି ଉଗ୍ର ଗନ୍ଧ
ଚୂତରେ ବକୁଳ ଦେଖି କୋକିଳ ଆନନ୍ଦ ।୧୫।
ମକର ସରନ୍ତେ ସଖି ଫଗୁଣର ଅନ୍ତେ
ଅଇଲା ବସନ୍ତ ଋତୁ ଅନଙ୍ଗ ସଙ୍ଗତେ,
ବହିଲାକ ମଳୟ ପବନ ଚନ୍ଦ୍ର ଭୁଲେ
ପଲ୍ଲବଲେ ତରୁଲତା ଫୁଟିଗଲେ ଫୁଲେ ।୧୬।
ଗୃଚେଶୀ ଗହଳ ସଖି ଗୋବିନ୍ଦଙ୍କ ଦୋଳ
ସବୁ ସୁଖ ଦେନଗଲେ ମଦନଗୋପାଳ,
କହୁଁ କହୁଁ ଚୂତ ବୃକ୍ଷେ ଧରିଗଲେ କଷି
କୋକିଳ ହିଡ଼ଇ ଚୂତ ଡାଳେ ଡାଳେ ବସି ।୧୭।

ଚଇତ ମାସରେ ରାଧା ମାଧବ ସୁନ୍ଦର,
ବୃନ୍ଦାବନେ ପଶିଣ ଲୋଡ଼ଇ ଅନୁସର;
ଦେଖଇ ପଲ୍ଲବ ଲତା ତରୁ ଫଳ ଫୁଲେ,
ଦେବ କହେ ସଖୀ କର ଧରି ଧରି ବୁଲେ ।୧୮।
ଇତି ଶ୍ରୀ ରହସ୍ୟ-ମଞ୍ଜରୀ ଦ୍ୱାଦଶ ଛାନ୍ଦେ
ଦ୍ୱାଦଶ ମାସାନ୍ଦ ଷଡ଼ଋତୁ ବନ୍ଦେ
ତ୍ରୟୋଦଶ ଛାନ୍ଦ ବର୍ଣ୍ଣନେ କେବଣ କେବଣ ବୋଧ
କହିବାକୁ ଆଜ୍ଞା ହେଉ, (ପ୍ରଭୁ) ଏଥିର ପ୍ରବୋଧ ।୧୯।

## ରୁକ୍ମଣୀବିଭା

**କାର୍ତ୍ତିକ ଦାସ**

### ( ସପ୍ତମ ଛାନ୍ଦ )

ଏଥୁ ଅନନ୍ତରେ ସପତମ ଛାନ୍ଦ ଗୀତ °
ବିଭାଘରେ ଆନନ୍ଦ ଉତ୍ସବ ନୃତ୍ୟ ଗୀତ ।
ଅନେକ ନୃପତି ରୁଣ୍ଡ, ବାଦ୍ୟମାନ ବାଜେ
ରଥୀ, ହାତୀ, ରାଉତ ମାହୁନ୍ତ ବଳ ସାଜେ ।୧।
ରତ୍ନ କଞ୍ଚୁକିତ ପାଟର ଯେ ଶାଢ଼ୀଘର
ନାମଗିରି ଟେରା ଟେକ କଲେକ ଉହାଡ଼ ।
ଚନ୍ଦ୍ରାତପ ଚଉପାଶେ ଚାମର ମଣ୍ଡିଲେ
ଅନେକ ଆଚ୍ଛାଦ ଚାମୁଣ୍ଡିଆ କରାଇଲେ ।୨।
ସୁବର୍ଣ୍ଣେ ଗଢ଼ିଲେ ବେଦୀ ସ୍ଫଟିକ ପାବଛ
ଚଉକୋଣେ ନେଇଣ ଥୋଇଲେ ଦଧିମାଛ ।
ସୁବର୍ଣ୍ଣ କୁମ୍ଭ ଉପରେ ଚୂତପତ୍ର ଡାଳ
ତଥି ଉପରେ ଥୋଇଲେ ନେଇ ନଡ଼ିଆଳ ।୩।

ରତ୍ନସିଂହାସନ ତହିଁ ଠାବେଣ ଠାବେଣ
ବସିଲେକ ଅନେକ ଆସିଣ ନୃପଗଣ ।
ଶିଶୁପାଳ ବରବେଶ ହୋଇକରି ଆସେ
ଶଏ ଯୋଡ଼ା ବାଇ ଢୋଲ ବାଜୁଅଛି ପାଶେ ।୪।
ଦୁଇପାଖେ ଅଛଇ ସହସ୍ର ପାଟଛତ୍ର
ବରବେଶେ ଆସୁଅଛି ଦମଘୋଷ-ସୁତ ।
ଜରାସନ୍ଧ ବୋଲଇ ରୁକ୍ମଣ ମୁହଁ ଚାହିଁ
ଘେନଆସ ବରକୁ ପାଛୋଟି ବେଗ ହୋଇ ।୫।
ଗଲେକ ରୁକ୍ମଣ ସଙ୍ଗେ ଘେନ ନିଜ ବଳ
ବାଜଣା ବଜାଇ ଘେନିଣ ଅଇଲା ଶିଶୁପାଳ ।
ବସିଲେକ ଶିଶୁପାଳ ସଭାର ମଧ୍ୟେଣ
ଦେଖିଣ ହରଷ ହୋନ୍ତି ଦୁଷ୍ଟ ରାଜାଗଣ ।୬।
ଏମନ୍ତ କହୁଣ ତହୁଁ ଶୁଭିଲେକ ଗୋଳ
ଧାଇଁଣ ଅଛନ୍ତି ଲୋକେ କରିଣ ଚହଳ ।
କେ ବୋଲନ୍ତି କେଉଁଣେ ଗଲା କେ ବୋଲନ୍ତି କାହିଁ
ବାରତା କହନ୍ତି ଏକ ଆରେକକୁ ଚାହିଁ ।୭।
ଗୋବିନ୍ଦେ ଅଇଲେ ବୋଲି ଶୁଣିଲେକ ତହିଁ
ବଳବୀର୍ଯ୍ୟମାନ ଗଲା ଗର୍ଭସ୍ରାବ ହୋଇ ।
କଣ୍ଠୀରବ ଧ୍ୱନି ଶୁଣି ଯେସନେ ହରିଣୀ
ତେସନେକ ପରାଭୂ ହୋଇଲେ ନୃପମଣି ।୮।
କ୍ଷତ୍ରିଗଣେ ଆବୋରିଣ ଜରାସନ୍ଧ କହେ
ତୁମ୍ଭେମାନେ ଭୟ କିମ୍ପା ପାଉଛ ସଭିଏଁ ।
ବରଣ ନ ଥାଇ ଯେବେ ଅଇଲେ ଗୋପାଳ
ଏ କଥାକୁ ତୁମ୍ଭେମାନେ କାହିଁ ପାଇଁ ଭାଳ ।୯।
ଯେ ଯାହାର ବଳମାନ ଭୁଅ ପାଞ୍ଚିଥିବା
ଆମ୍ଭେମାନେ ବସିଥାଇଁ ବିଭା କରାଇବା ।
ଦୁଷ୍ଟପଣ ଆଚରିବ ଯେବେ ଚକ୍ରଧର
ତେବେ ଆମ୍ଭେମାନେ କରି ପାରି ତ ସମର ।୧୦।

ରୁକ୍ମଣକୁ ବୋଇଲେ କନ୍ୟାକୁ ଘେନ ଆସ
ବରଣ ହୋଇବ ତ ବର୍ତ୍ତିଲା ଗନ୍ଧବାସ ।
ରୁକ୍ମଣ ବୋଇଲା କନ୍ୟା ଅର୍ଘ୍ୟସ୍ଥାନେ ଯିବ
ରଥୀ, ହାଣ୍ଡି, ଶତ ଶତ ତାର ସଙ୍ଗେ ଥିବ ।୧୧।
ଭବାନୀଙ୍କ ଦର୍ଶନ କରାଇ ବେଗେ ଆଣ
ଦାସୀଙ୍କୁ ରାଇଣ ଆଜ୍ଞା ଦେଲେକ ରୁକ୍ମଣ ।
ତତକ୍ଷଣେ ନଜ ପରିବାରମାନେ ଗଲେ
ରୁକ୍ମଣୀକି ଗନ୍ଧଜଳେ ସ୍ନାନ କରାଇଲେ ।୧୨।
ପିନ୍ଧାଇଲେ ଅପୂର୍ବ ପଟ୍ଟମା ଝୀନ ବାସ
ମଲ୍ଲିକା କୁସୁମେ ଭରି ସଜାଡ଼ିଲେ କେଶ ।
କପାଳେ ତିଳକ ଅଙ୍ଗେ ଚନ୍ଦନ ଲେପିଣ
ମୁକୁତା ସୀମନ୍ତି ହେବ ତାଙ୍କ ଭୂଷଣ ।୧୩।
ସୁବେଶ କରାଇ ଦାସୀ ପହଣ୍ଡ ମଣୋଇ
ହାନ୍ଦୋଳା ଉପରେ ବିଜେ କରାଇଲେ ନେଇ
ପାଟଛତ୍ର ବିମଳ ଆରମ୍ଭ ଫରହର
ଦୁଇ ପାଶେ ସୁନାବେଣ୍ଟ ସହସ୍ର ଚାମର ।୧୪।
ମୃଦୁସୁଲମାନେ ସଙ୍ଗେ ଅଛନ୍ତି ଗୋଡ଼ାଇ
ଧୂପ ଦୀପ ଗନ୍ଧ ପୁଷ୍ପ ନଇବେଦ୍ୟ ବହି ।
ଅକ୍ଷତ ତାମ୍ବୁଳ ଦୀପ ବସାଇଣ ଥାଳୀ
ଗାବନ୍ତି ମଙ୍ଗଳ ଗୀତ ଦେଇ ହୁଳହୁଳି ।୧୫।
ଦାଣ୍ଡ ପହରାଇଣ ଚନ୍ଦନ ଛେଡ଼ା ଦେଇ
ରୁକ୍ମଣୀ ଚଳିବା ପଥେ ପୁଷ୍ପ ବରଷଇ ।
ଡାକୁଛନ୍ତି ପରିବାର ମଣିମା ଗୋ ମାଏ
ଭଗବତୀ ମନ୍ଦିର ଦ୍ୱାରେଣ ଯାଇ ହୋଏ ।୧୬।
ଅମ୍ବିକାପୁରକୁ ଯହୁଁ ଗଲେକ ରୁକ୍ମଣୀ
ଶ୍ରୀକୃଷ୍ଣ ନନ୍ଦଘୋଷ ବାହିଲେ ତାହା ଶୁଣି ।
ଶଏପୁର ହୋଇଣ ପଡ଼ିଛୁ ପଟୁଆର
ତହିଁ ଯାଇ ବିଜୟେ କଲେକ ଚକ୍ରଧର । ।୧୭।

ହାନ୍ଦୋଳା ଉପରୁ ଓହ୍ଲାଇଲେ ଜେମାଦେଈ
ରତ୍ନମୟ କଠାଉ ଚରଣେ ଆଣି ଦେଇ ।
ଚରଣ ଧୋଇଣ ତହିଁ ଆଗ୍ଭେବନ ସାରି
ପତିବ୍ରତା ବ୍ରାହ୍ମଣୀମାନଙ୍କ କର ଧରି ।୧୮।
ଦେଉଳ ଭିତରେ ଯାଇ ପଶିଲେ ରୁକ୍ମଣୀ
ସାଷ୍ଟାଙ୍ଗେ ପାୟେ ପଡ଼ିଣ ସ୍ତୁତି କଲେ ପୁଣି ।
ଜୟ ଜୟ ଦେବୀ ମାଗୋ ଅନାଦି ଶକତି
ଗିରୀଶ-ନନ୍ଦିନୀ ଗଉରୀ ଭଗବତୀ । ୧୯ ।
ଚଣ୍ଡ, ମୁଣ୍ଡ ନାଶିନୀ ମହିଷା-ଦର୍ପହାରୀ
ପ୍ରସନ୍ନ ହୋଇବା ମୋତେ ଦେବୀ ଶାକମ୍ଭରୀ ।
ତୁମେ ଦେବୀ ଅନାଦି ଅଭୟା ମହାମାୟେ
ଶିଶୁପାଳ ମୁଖୁଁ ମୋତେ କର ଗୋ ଅଭୟେ । ୨୦ ।
ଏମନ୍ତ ପ୍ରକାରେଣ ଅନେକ ସ୍ତୁତି କଲେ
ଚନ୍ଦନ ଲେପିଣ ଗଳେ ପୁଷ୍ପମାଳା ଦେଲେ ।
ଧୂପ ଦୀପ ଗନ୍ଧ ପୁଷ୍ପ ନଇବେଦ୍ୟ ଦେଇ
କାମନା କଲକ ବାଳୀ କୃଷ୍ଣ ପାଇବଇଁ । ୨୧ ।
ଏମନ୍ତେଣ ପ୍ରସନ୍ନ ହୋଇଲେ ମହାମାୟେ
ପାଇବ କୃଷ୍ଣଙ୍କୁ ଏଥେ ନାହିଁ ଗୋ ସଂଶୟେ ।
ପୁଣି ପାଦତଳେ ପଡ଼ି ଉଠିଣ ରୁକ୍ମଣୀ
ବାହୁଡ଼ିବା ବେଳକୁ ମଙ୍ଗଳ କଲେ ପୁଣି । ୨୨ ।
ସଧୀରେ ସଧୀରେ ବାଳୀ ପହଣ୍ଡ ମଣାଇ
କମଳନୟନରୂପ ମନେ ଅଛି ଧ୍ୟାୟି ।
ଘନ ଘନ ଫୁରଇ ତା ବାମ ବାହୁ ଆଖି
ଦେଉଳରୁ ବାହାର ହୋଇଲେ ଚନ୍ଦ୍ରମୁଖୀ । ୨୩ ।
କୃଷ୍ଣଙ୍କୁ ନ ଦେଖି ତାର ଦେହେ ଜ୍ଞାନ ନାହିଁ
ବଦନ ଟେକିଣ ବାଳୀ ଦେଲକ ଅନାଇଁ ।
ଦେଖିଲକ ଅଭିନବ ମଦନ ସୁନ୍ଦର
ନୟନେ ନୟନ ଭେଟ ପଡ଼ିଲା ତାହାର । ୨୪ ।

ଅତି ବେଗେ ରଥରୁ ଓହ୍ଲାଇ ଯଦୁସାଇଁ
ରୁକ୍ମଣୀଙ୍କ କର କରେ ଧଇଲେକ ଯାଇଁ ।
ଅଶ୍ୱଗଜ ରଥବର ଅଛନ୍ତି ଅପାର
ନେଇ ବସାଇଲେ ନନ୍ଦିଘୋଷର ଉପର । ୨୫ ।

ଯେସନେକ କଣ୍ଠୀରବ ନଅଇ ହରିଣୀ
ତେସନେକ କରିଣ ନେଲେ ଚକ୍ରପାଣି ।
ନାଗମଧ୍ୟୁଁ ଯେସନେ ଗରୁଡ଼ୁ ନେଇ ବଳି
ତେସନେ କରିଣ ଘେନିଗଲେ ବନମାଳୀ । ୨୬ ।

ନେଲା, ନେଲା, ଗଲା, ଗଲା, ବାଜିଲାକ ହେଳି
ଧାଇଁଲେଖି ରଥୀ ହାଥୀ ନୃପତି ସକଳ ।
ଜରାସନ୍ଧ ବଳ ଘେନି ଅଛଇ ଗୋଡ଼ାଇ
ଆଗେ ଓଗାଳିଲେ ଆସି ରେବତୀର ସାଇଁ । ୨୭ ।

ରୁକ୍ମଣୀଙ୍କୁ ଘେନିଣ ସେ ଗଲେ ଚକ୍ରଧର
ହାଥୀ ହାଥୀ ରଥେ ରଥେ ଲାଗିଲା ସମର ।
ନଗ୍ରଲୋକେ ବୋଲନ୍ତି ଯେ ଯଦ୍ୱଂଶ ଭଞ୍ଜନ
ବିଧାତା କେମନ୍ତେ ଆନ କରିବ ଘଟଣ । ୨୮ ।

ବେଦୀର ଉପରେ ଆଉ ବସିଛି କ ପାଇଁ
ଜୁଳୁଜୁଳୁ ମୁଖେ ଲାଜ ବଳୁଛି ତ ନାହିଁ ।
ବୋଲୁଛନ୍ତି ଆମ୍ଭେ ବଡ଼ରାଜା ବଳୀୟାର
କୋଡ଼ୁ ଘେନି ଯାଉଛନ୍ତି କନିଆ ଏହାର । ୨୯ ।

□□□

# ଗୁରୁସେବା

ପୀତାମ୍ବର ଦାସ

ତେତେବେଳେ ଯାଇଁ କୃଷ୍ଣ ଦେଲେକ ଉତ୍ତର
ବ୍ରହ୍ମାଙ୍କୁ ବୋଇଲେ ଶ୍ରୀଗୁରୁଙ୍କୁ ସେବାକର ।
ଗୁରୁଙ୍କୁ ଚହ୍ନିଲେ ଏକା ପାଇବୁ ଆମ୍ଭଙ୍କୁ
ନୋହିଲେ ଭ୍ରମୁଥିବୁ ନ ଭେଟି ଠାକୁରଙ୍କୁ ।
ବୁଝିଲେ ଆମ୍ଭ ଏକା ଶ୍ରୀଗୁରୁ ଜଗନ୍ନାଥ
ଗୁରୁ ସେ ପ୍ରାଣୀକି ତାରି କରନ୍ତି କୃତାର୍ଥ ।
ଗୁରୁଙ୍କୁ ଯେ ନ ସେବେ ସେ ମୋତେ ହୁଏ ଦୂର
ବୁଝିଲେ ମୁହିଁ ଶ୍ରୀଗୁରୁ ସାକ୍ଷାତେ ଈଶ୍ୱର ।
ପ୍ରତ୍ୟକ୍ଷରେ ମୁହିଁ ଏକା ଅଟଇ ଗୁରୁ ଜାଣ
ଗୁରୁ ବିନା ଜଗତେ କେ ନାହିଁ ପରିତ୍ରାଣ ।
ଗୁରୁଙ୍କୁ ଯେହୁ ଚହ୍ନଇ ମୋତେ ସେହୁ ଜାଣେ
ଗୁରୁ ଅଚହ୍ନା ଲୋକଟି ଭ୍ରମେ ଅକାରଣେ ।
ଶ୍ରୀମୁଖେ କହନ୍ତି ଏହିପରି କୃଷ୍ଣ ବ୍ରହ୍ମ
ଶୁଣି ବେଦବ୍ରହ୍ମା ପୁଛାକଲେ ଗୁରୁଧର୍ମ ।
ବୋଇଲେ ସ୍ୱାମୀ କହିବା ହେଉ ଧର୍ମବାଣୀ
କିରୂପେ ଭକ୍ତ ତରିବେ ସେବା କରି ପ୍ରାଣୀ ।
ଶ୍ରୀକୃଷ୍ଣ ଆଜ୍ଞା କଲେକ ବ୍ରହ୍ମା ତେବେ ଶୁଣ
ଶିଷ୍ୟଙ୍କୁ ଗୁରୁ ପ୍ରତ୍ୟକ୍ଷେ ଅଟଇ ନାରାୟଣ ।
ଗୁରୁ ବ୍ରହ୍ମା ଗୁରୁ ବିଷ୍ଣୁ ଗୁରୁ ମହେଶ୍ୱର
ଗୁରୁ ସେ ପରମବ୍ରହ୍ମ ଅଟଇ ମୋକ୍ଷଦ୍ୱାର ।
ଶ୍ରୀଗୁରୁ ଅଟନ୍ତି ମହାପ୍ରଭୁ ଚତୁର୍ଭୁଜ
ଶ୍ରୀମୁଖେ କହୁଛୁଁ ଆମ୍ଭେ ଭଲକରି ବୁଝ ।

ଆମ୍ଭ ବଚନ ନମାନ ଆନ ବସ୍ତୁରଲେ
ସେ ଶିଷ୍ୟ ନରକକୁଣ୍ଡେ ପଡ଼େ ଜାଣ ମଲେ ।
ଯାବତ ତୀର୍ଥ ମଧ୍ୟରେ ଗଙ୍ଗା ଯେସ୍ନେ ଶ୍ରେଷ୍ଠ
ସେରୂପେ ଶିଷ୍ୟଙ୍କୁ ଗୁରୁ ଅଟେ ମୁକ୍ତିବାଟ ।
ଯାବତ କ୍ଷେତ୍ରଙ୍କ ମଧ୍ୟେ ଯେସ୍ନେ ନୀଳଗିରି
ସେସ୍ବରୂପେ ଏ ସଂସାରେ ଗୁରୁ ମୋକ୍ଷକାରୀ ।
ଗୁରୁଙ୍କୁ ନର ବୋଇଲେ ମହାପାପ ପାଇ
ମହାନର୍କକୁଣ୍ଡରେ ସେ ମଲେ ପଡ଼େ ଯାଇ ।
ପୃଥ୍ୱୀ ଆପ ତେଜ ବାୟୁ ଆବର ଆକାଶ
ଯେନବ ଏହ୍ୱ ପାଞ୍ଚଙ୍କ ତୁଲେ ଗୁରୁ ଶିଷ୍ୟ ।
ଓଁକାର ଯେସ୍ନେ ପଞ୍ଚାଶ ବର୍ଣ୍ଣ ମଧ୍ୟେ ସାର
ତହିଁରୁ ଶତେ ଅଧିକ ଶ୍ରୀଗୁରୁ ଠାକୁର ।
ପ୍ରତ୍ୟକ୍ଷେ ଶ୍ରୀଗୁରୁ ମହାପ୍ରଭୁ ନାରାୟଣ
ବ୍ରହ୍ମା ବିଷ୍ଣୁ ହର ବୋଲି ଯେନ ନଷ୍ଟେଁ ଜାଣ ।
ଶ୍ରୀଗୁରୁଙ୍କ ଶ୍ରୀଚରଣେ ଯେବଣ ଉଦକ
ତାହା ପାଇ ଶିଷ୍ୟ ଯେବେ ନଯେନେ ମସ୍ତକ ।
ପାଣି ତୁଲେ ସମକରେ ଯେବେ ସେହୁ ଜଳ
ତା'ଠାରୁ କେ ଅପରାଧୀ ନାହିଁ ଭୂମଣ୍ଡଳ ।
ଗୁରୁ ଏକା ସଂସାରକୁ ଅଟେ ମୋକ୍ଷଦାତା .
ଗୁରୁଠାରୁ ଶ୍ରେଷ୍ଠ ହୋଇ ନାହିଁ କେ ଦେବତା '
ସହସ୍ରେକ ଶିବଲିଙ୍ଗ ପୂଜିଲେ ଯେ ପୁଣ୍ୟ
ତହିଁରୁ ଶତେ ଅଧିକ ଶ୍ରୀଗୁରୁ-ଦର୍ଶନ ।
ଯେବଣ କୃତଘ୍ନ ମୂର୍ଖ ମନ୍ଦ କୁଳାଙ୍ଗାର
ସେହି ଅବା ଶ୍ରୀଗୁରୁଙ୍କୁ ମଣଇ ଯେ ନର ।
ଯାହା ଆଶୀର୍ବାଦେ କୁଳ ଉଜ୍ଜ୍ୱଳ ହୁଅଇ
ମୂଢ଼ପଣେ ତାଙ୍କୁ ନର ପ୍ରାୟେ ସେ ମଣଇ ।
ଯେବଣ ଶିଷ୍ୟଟି ଜାଣ ଗୁରୁସେବା ତେଜ
ଆନ ଦେବତାମାନଙ୍କୁ ଯାଏ ପୁଣି ପୂଜ ।

ତାହାର ସଂସାରେ ଯେତେ ଦୋଷ ହୁଏ ପୁଣ
ଶ୍ରୀମୁଖ ବଚନ ଏହା ଅଟଇ ପ୍ରମାଣ ।
ତାର ଶତ ଶତ କୋଟି ପୁରୁଷଙ୍କୁ ଘେନ
ପୂତିଗନ୍ଧ ନରକରେ ପଡ଼େ ଯୁଗ ତିନ ।
ଯେବଣ ଶିଷ୍ୟ ଶ୍ରୀଗୁରୁ ଗୋସାଇଁ ଚରଣେ
ଦେଖିଲାକ୍ଷଣି ଗୃହରୁ ପାଣିଢ଼ାଳ ଆଣେ ।
ବେନି ଚରଣର ତଳେ ଗଡ଼ୁ ଗୋଟି ଥୋଇ
ଧୋଇ ଦେଇ ଗୁରୁପାଦ ଆନନ୍ଦିତ ହୋଇ ।
ସେ ପାଦ-ନୀରକୁ ନେଇ ଗର୍ଭକୁ କ୍ଷେପିବ
ଥୋକାଏ ନେଇ କୁଟୁମ୍ବ ଶିରେ ସିଞ୍ଚି ଦେବ ।
ଆବର କଣ୍ଟୁ ସିଞ୍ଚିବ ନେଇ ସବୁ ଦ୍ରବ୍ୟେ
ପାଞ୍ଚିବ କାରୁଣ୍ୟ ଜଳ ବୋଲି ଭକ୍ତିଭାବେ ।
ଆଉ ଯାହା ଥିବ ଦେବ ତୁଳସୀର ମୂଳେ
ନୋହିଲେ ପକାଇଦେବ ଅଗାଧ ସଲିଳେ ।
ତହିଁ କି ନଗଲେ ଦେବ ପୋଖରୀରେ ଢାଳି
ଶ୍ରୀମୁଖ ବଚନ ମୋର ଥିବ ପ୍ରତିପାଳି ।
ଏଥକୁ ଦୋଷ ଘେନିବ ମନେ ଯେହୁ ଜାଣ
ବ୍ରହ୍ମହତ୍ୟା ଦୋଷ ଲଭିବ ସେ ଶରୀରେଣ ।
କୋଟି ଗଙ୍ଗାସ୍ନାନ-ଫଳ ବିଫଳ ହୋଇବ
ଏ କଥା ଗୋଟିକ ବ୍ରହ୍ମା ଜାଣ ନଷ୍ଟେଁ ଧ୍ରୁବ ।
ଗୁରୁ ବସ୍ତୁ ବୋଲି କଲେ ଜୀବ ମୋକ୍ଷ ହୋଇ
ନରତୁଲେ ସମକଲେ ମରେ ପାପ ପାଇଁ ।
ସାକ୍ଷାତେ ଅଟନ୍ତି ଗୁରୁଦେବ ଭଗବାନ
କେବଳ ଏହା ଏକା ନମାନେ ମୂର୍ଖ ଜନ ।
ବୁଝିଲେ ଅଟନ୍ତି ଗୁରୁ ଶିଷ୍ୟ ଏକ ଆତ୍ମା
ଆତ୍ମାକୁ ଚହ୍ନିବେ ବୋଲି ପଣ୍ଡିତେ ମହାତ୍ମା ।
ଗୁରୁଙ୍କର ପାଦଧୋଇ ପାଦତଳେ ପଡ଼ି
ଦଣ୍ଡବତ କରି ପୁଣି ଉଠି କର ଯୋଡ଼ି ।

ପୁଣି ପ୍ରଣାମ କରିବ ପାଦେ ବେଳ ଶତ
କରିବ ନୋହିଲେ ଅଶୀବାର ଦଣ୍ଡବତ ।
ଷାଠିଏ ଅବା ଚଉଳିଶ ଥର ଅବା କରୁ
କପଟ ଛାଡ଼ିଥିବଟି ଏକା ହୃଦୟରୁ ।
ଶ୍ରୀଗୁରୁ ମହାପ୍ରଭୁଙ୍କ ଆଜ୍ଞା ଶିରେ ଧରି
ସେବିବ ନିର୍ମଳ ଚିତ୍ତେ ମନଦୃଢ଼ କରି ।
ଯେ ଅବା ଘରେ ତାହାର ମିଳେ ଯେଉଁ ଦ୍ରବ୍ୟ
ମନ ସନ୍ତୋଷେ ଗୁରୁଙ୍କୁ ତାହା ନେଇ ଦେବ ।
ରନ୍ଧନ କରି ବିଷ୍ଣୁଙ୍କୁ ଚଢ଼ାଇ ବାଢ଼ିଦ୍ୟନ୍ତେ
ସେ ଶିଷ୍ୟ ଜୀବନ ଧନ୍ୟ ଅଟଇ ଜଗତେ ।
ନୃସିଂହ ଶ୍ରୀମୁଖେ ଲଗିକରନ୍ତେ ତା ନେଇ
ସେହିଟି ମହାନିର୍ମାଲ୍ୟ ସଂସାରରେ ହୋଇ ।
ସେ ନିର୍ମାଲ୍ୟ ପ୍ରସାଦକୁ ପାଆନ୍ତି ଯେ ପ୍ରାଣୀ
ତାହାଙ୍କ ହୃଦ ପବିତ୍ର ନିଶ୍ଚେ ହୁଏ ପୁଣି ।
କୋଟି ରାଜସୂୟ ଯଜ୍ଞ କଲେ ଯେତେ ପୁଣ୍ୟ
ଗୁରୁ ପ୍ରସାଦ ଅନ୍ନକୁ ସରି ନୋହେ ଜାଣ ।
ଚାନ୍ଦ୍ରାୟଣବ୍ରତ ଏକକୋଟି ଯେବେ କରି
ଗୁରୁସେବା ଧର୍ମକୁ ଯେ ନୁହନ୍ତି ସେ ସରି ।
ଶ୍ରୀଗୁରୁଙ୍କୁ ଦଣ୍ଡବତ କଲେ ଯେତେ ପୁଣ୍ୟ
ସେ କଥା କହୁଛି ଶୁଣ ଚତୁର-ଆନନ ।
କରିବ ଗଙ୍ଗା ମହାର୍ଘ-ସ୍ନାନ ଯେବେ ଶତେ
ସେହି ନୁହଇ ସମାନ ଗୁରୁସେବା ଯେତେ ।
କାର୍ତ୍ତିକ ମାଘ ହବିଷ୍ୟ ସ୍ନାନ ଲକ୍ଷେ କଲେ
ଗୁରୁଦର୍ଶନକୁ ସରି ନୁହନ୍ତି ସେ ଭଲେ ।
ଆବର ସେ ସିଦ୍ଧ କଥା ଶୁଣ ବେଦବରେ
ଗୁରୁମୁଖେ ମହାମନ୍ତ୍ର ଶୁଣିବ ଯେଉଁଠାରେ ।
ତୁଳସୀ ବୃକ୍ଷର ମୂଳେ ଅଶ୍ୱତ୍ଥର ତଳେ,
କିଅବା ପୁଷ୍ପବନରେ ଅବା ଦେବଆଳେ ।

ଶ୍ରୀବିଷ୍ଣୁଙ୍କ ମନ୍ଦିରରେ ବା ବଇଷ୍ଣବ ମଠେ
ସମୁଦ୍ର ନଦୀ ତୀରରେ ଅବା ଗୋରୁଗୋଠେ ।
ଏତେକ ସ୍ଥାନେ ବସି ଯେ ହେବ ଗୁରୁକର୍ମୀ
ତାହାର ଭାଗ୍ୟ କହି ନ ପାରେ ପଦ୍ମଯୋନି ।
ନୋହିଲେ ଗୁରୁଙ୍କ ବାକ୍ୟ ଫିଟିବ ଯେତେବେଳେ
ସେ ବୋଲକୁ ପାଳି ମନ୍ତ୍ର ଘେନିବ ତତ୍‌କାଳେ ।
ଗୁରୁ ସନ୍ତୋଷ ହୋଇଲେ ସର୍ବ ଧର୍ମ ପାଇ
ଭାଗ୍ୟବନ୍ତ ଶିଷ୍ୟଙ୍କୁ ଯେ ଗୁରୁ ଦୟା ବହି ।
ପରମ ଗତି ଘେନି ଯେ ଶିଷ୍ୟ-ଜନ୍ମ ପାଇ
ଲେଉଟି ଗୁରୁପାଦରେ ଭକ୍ତି ଉପୁଜଇ ।
ରୋଗ ଶୋକ ଦୁଃଖରେ ସେ ନୁହେ କେବେ କଷ୍ଟୀ
ଭୁଞ୍ଜଇ ବିପୁଳ ଭୋଗ ଜନ୍ମେ ଜନ୍ମେ ସେହି ।
ପ୍ରୟାଗେ ମକରସ୍ନାନ କଲେ ଯେତେ ପୁଣ୍ୟ
ସେ ଫଳ ଲଭେ ଗୁରୁଙ୍କୁ ଦେଲେ ଶିଷ୍ୟ ଅନ୍ନ ।
ଆବର ଗୁରୁଙ୍କୁ ନିତ୍ୟ ଦରଶନ କଲେ
ସେ ପୁଣ୍ୟର କଥା କହି ନପାରଇ ଭଲେ ।
ଆପଣାର ଗ୍ରାମେ ଯେବେ ଗୁରୁ ଜାଣ ଥିବ
ଦିନକେ ଥରେ ଅବଶ୍ୟ ଦର୍ଶନ କରିବ ।
ଅର୍ଦ୍ଧକୋଶରେ ଯେବେ ଗୁରୁ ଥିବେ ରହି
ନିଦିନରେ ବେଳେ ଶିଷ୍ୟ ପ୍ରଣମିବ ଯାଇଁ ।
କୋଶକରେ ଗୁରୁ ଯେବେ ଥିବେ ବାସକରି
ମାସକରେ ବେଳେ ଶିଷ୍ୟ ଗୁରୁପାଦ ଧରି ।
ଘର କରି ଗୁରୁ ଯେବେ ଥିବେ ରାଜ୍ୟାନ୍ତରେ
ଛ'ମାସେ ଶିଷ୍ୟ କରିବ ଯାଇ ସେବା ଥରେ ।
ଅତି ଦୂର ଯେବେ ହେବ ଗୁରୁଙ୍କ ଭବନ
ବରଷକେ ଶିଷ୍ୟ ଥରେ କରିବ ଦର୍ଶନ ।
ଅଥବା ଗୁରୁଙ୍କୁ ଯେବେ ନ ଦେଖିବ କେବେ
ଦର୍ଶନ କରିବ ମନେ ମନେ ଗୁରୁଦେବେ ।

ପ୍ରଭାତୁ ଉଠି ବସିବ ଶ୍ରୀଗୁରୁଙ୍କୁ ଧ୍ୟାଇ
କରିବ ଯେ ଦଣ୍ଡବତ ଶୁଦ୍ଧଚିତ୍ତ ହୋଇ ।
ଏଥିରେ ପୁଣ୍ୟ ଯେତେକ ଜାଣନ୍ତି ଗୋବିନ୍ଦ
ଶୁଣନ୍ତି ଯେ ପିତାମହ ହୋଇଣ ଆନନ୍ଦ ।
ଗୁରୁଙ୍କୁ ଦର୍ଶନ କରି ଯିବ ଯେବେ ଶିଷ୍ୟ
ନମିଲେ ଶୂନ୍ୟ ହସ୍ତରେ ବିଫଳ ତା ଯଶ ।
କିଛି ଦ୍ରବ୍ୟ ନମିଳିଲେ ନେବ ଫୁଲଟିଏ
ଗୁରୁ ପାଦତଳେ ଥୋଇ ହୋଇବ ବିନୟେ ।
ଚରଣ ତଳରେ ପଡ଼ି ହେବ ଦଣ୍ଡବତ
ଉଠିଲେ ଉଭା ହୋଇବ ଯୋଡ଼ି ବେନି ହସ୍ତ ।
ମୁଖରେ ଭଜି ବୋଲିବ ଶ୍ରୀଗୁରୁ ଗୋବିନ୍ଦ
ମଥାରେ ଲନ୍ଦିବ ଆଣି ଗୁରୁ-ପଦ୍ମପାଦ ।
ଏ ଘୋର ଅନ୍ଧାରୁ ମୋତେ କରିବାକୁ ପାରି
ଏମନ୍ତ ବୋଲିବ ମୁଖେ ବସି ପାଦ ଧରି ।
ଶତେ କପିଳା ଗୋଦାନ କଲେ ଯେତେ ଫଳ
ସେ ପୁଣ୍ୟ ଲଭନ୍ତି ଶିଷ୍ୟ ଭକ୍ତିରୁ କେବଳ ।
ଆଉର ସିଦ୍ଧାନ୍ତ ବାଣୀ ଶୁଣ ହେ ବିଧାତା
ଶ୍ରୀମୁଖ ବଚନ ମୋର ନୁହଇ ଅନ୍ୟଥା ।
ପ୍ରଭାତୁଁ ଉଠି ଗୁରୁଙ୍କୁ ଶିଷ୍ୟ ଯେବେ ନମେ
ଲଭଇ ଗଙ୍ଗାସ୍ନାନର ଫଳ ପୁଣ୍ୟକାମେ ।
ଯେବଣ ଶିଷ୍ୟ ଦିବସ ଅର୍ଦ୍ଧେ ଜପି ନାମ
ଗୁରୁଙ୍କ ପାଦ ଧରିଣ କରଇ ପ୍ରଣାମ ।
କୋଟିତୀର୍ଥ ଯିବା ଫଳ ତତକ୍ଷଣେ ପାଇ
ଶ୍ରୀମୁଖ ବଚନ ମୋର ଅନ୍ୟଥା ନୁହଇ ।
ଗୁରୁଙ୍କୁ ସନ୍ଧ୍ୟାକାଳରେ କଲେ ଦଣ୍ଡବତ
ତହିଁର ଫଳ ଅଟଇ ଜାଣ ଅଲୌକିତ ।
କୋଟି କୋଟି ବ୍ରହ୍ମାଣ୍ଡକୁ ଦେଲେ ଦାନ କରି
ସେହି ନୁହଇ ସମାନ କହନ୍ତି ଯେ ହରି ।

ଏଣୁ ତୁହିଁ ଶିଷ୍ୟ ଯଦ୍ୟପି ଗୁରୁ ସେବାପାରେ
ତାହାଁର ଫଳ କେ କହି ନପାରେ ସଂସାରେ ।
ଗାବ ତିନ ପଦ୍ମ ଜାଣ ଦାନ ଯେବେ ଦେବ
ତାହାଁକ ନୁହଇ ସର କହନ୍ତି କେଶବ ।
ଯେବଣ ଶିଷ୍ୟ ଦେଖିଲକ୍ଷଣି ଦ୍ୱାରେ ଗୁରୁ
ପ୍ରଣାମ କରି ରନ୍ଧାଇ ଅନ୍ନ ଆଣି ଘରୁ ।
ନବାତ ଶାକର ଖଣ୍ଡ ଦଧି ଦୁଧ ଭୁଲେ
ମଣୋହି କର ହୋ ବୋଲି ଗୁ ରୁଙ୍କୁ ଯେ ବୋଲେ ।
ଗୁରୁଙ୍କର ମନ ଜାଣି କରେ ବସି ସେବା
ମିଷ୍ଟାନ୍ନ ସହିତ ଦିଏ ଉତ୍ତମ ପରିବା ।
ସେ ଶିଷ୍ୟର ଯେ ସୁକୃତ କହି ନୁହେ ଅନ୍ତ
ଆମ୍ଭର ଶ୍ରୀମୁଖ ବାଣୀ ଅଟେ ଜାଣ ସତ୍ୟ ।
ଆବର କଥାଏ ମଧ୍ୟ ଶୁଣ ବେଦବର
ଗୁରୁଙ୍କୁ ଦେଖି ହାତେ ଯେ କରେ ନମସ୍କାର ।
ଭୂମିରେ ଦଣ୍ଡବତ ଯେ ପ୍ରାଣୀ ନ କରଇ
ତାହାଁର ପାତକ ଯେ କହିଲେ ନ ସରଇ ।
ବେନକଂର ଛେଦିଲେ ଯେ ପାପ ଯାଇ ନାଶ
ଆବର ଯେ ସତ୍ୟ ବାଣୀ ଶୁଣ ଲୋକଈଶ ।
ଗୁରୁଙ୍କ ଆସନ ଯେହୁ ହେଳାକରି ଝୁଣ୍ଟି
ଗୁ ରୁଙ୍କ ଆଗେ କଠାଉ ମାଡ଼ଣ ଗୃଲେଟି ।
ଗୁ ରୁଙ୍କର ବଚନ ଯେ ନଶୁଣଇ କର୍ଣ୍ଣେ
ଗୁ ରୁଙ୍କ ଆସନ ପରେ ବସେ ଯେ ଅଜ୍ଞାନେ ।
ମୂର୍ଖପଣେ ଗୁରୁଙ୍କୁ ଯେ ନଜର ନକରେ
ଗୁ ରୁଙ୍କୁ ଜବାବ ଦିଏ ଗର୍ବ ଅହଂକାରେ ।
ପ୍ରଥମୁଁ ଯେ ଶିଷ୍ୟଟି ନ କରିଥିବ ଗୁ ରୁ
ଲୋକଲଜ୍ଜା ପାଇ ମରେ ବଳେ ଚଣ୍ଡାଳରୁ ।
ସେ ଲୋକମାନେ ପଡ଼ନ୍ତି ମଲେ ଯେ ନରକେ
ଆବର ବିଷୟ ଶୁଣ କହୁଛି ଶ୍ରୀମୁଖେ ।

ଯେବଣନ୍ତି ଶିଷ୍ୟ ପୁଣ ଗୁରୁଙ୍କୁ ସଂସାରେ
ନର ସଙ୍ଗେ ସମାନଟି ଘେନଇ ମନରେ ।
ବାପର ତୁଲେ ସମାନ ଘେନେ ଲେଖାକରି
ମାତା ସମାନ ଘେନଇ ଗୁରୁଙ୍କର ନାରୀ ।
ଲକ୍ଷ୍ମୀନାରାୟଣ ପ୍ରାପ୍ତ ନ ଘେନଇ ଏକା
ଗୁରୁଙ୍କ ପୁତ୍ରକୁ ବୋଲେ ଏ ମୋହର ସଖା ।
ଗୁରୁ ସମାନ କରି ନ ଘେନେ ଗୁରୁପୁତ୍ର
ଲେଖଇ ଭାଇ ବୋଲିଣ ମୂର୍ଖପଣେ ମାତ୍ର ।
ଅଚେତା ହୋଇ ମନୁଷ୍ୟ ବୋଲି ମନେ ଘେନେ
ପିତା ମାତା ଭାଇ ବୋଲି ଲେଖଇ ଯେ ମନେ ।
ସାକ୍ଷାତରେ ଗୁରୁ ବିଷ୍ଣୁ ଗୁରୁନାରୀ ଲକ୍ଷ୍ମୀ
ଗୁରୁପୁତ୍ର ଗୁରୁ ବୋଲି ନଘେନଇ ଭ୍ରମି ।
ଯେବଣ ଗୁରୁ ସାକ୍ଷାତେ ଅଛେ ବ୍ରହ୍ମରୂପ
ତାହାଙ୍କୁ ପୁଣି ସମାନ ହୁଅନ୍ତି କି ବାପ ।
ଲକ୍ଷ୍ମୀ-ନାରାୟଣଙ୍କୁ ବା ବଚନେ ହୁଡ଼ଇ
ପିତାମାତା ନାନା ତୁଲେ ଲେଖାକରୁଥାଇ ।
ପିତାମାତା ଜନ୍ମ ଦିନା ସଂସାରେ କାରନ୍ତି
ଗୁରୁ ବିନା ମୋକ୍ଷ ନକରଇ ଜଗଜ୍ୟୋତି ।
ନରକର ନିସ୍ତାରଣ ଅଛେ ଏକା ଗୁରୁ
ଗୁରୁ ବିନା ମୋକ୍ଷ କରି ନାହିଁ କେ ସଂସାରୁ ।
ଗୁରୁ ସନ୍ତୋଷେ ଶିଷ୍ୟର ବର୍ଦ୍ଧିତ ଯେ ହୁଏ
ତେବେ ସେହି ଦୁର୍ବାସନା କାଟେ ଭବଭୟେ ।

□□□

# ପାଟଳୀପୁତ୍ର ବା ପୁଷ୍ପପୁର ନଗର ବର୍ଣ୍ଣନା

ଉପେନ୍ଦ୍ର ଭଞ୍ଜ

ଶୁଣ ବିଦଗ୍ଧ ଜନ । ମଗଧ ଦେଶ ରଞ୍ଜନ ।<br>
ମାଗଧ-ମାଗଧେ ଭଣି । ଦେଶ ଅଗ୍ରଣୀ ଏ । ୧ ।<br>
ପୃଚ୍ଛିଲେ ନିଷେଧ କହି । ସ୍ୱଦେଶୀ ସେ ସମ କେହି ।<br>
ଏ ବାଣୀ ମରୁ ମହ୍ଲାରେ । କହେ ବେଗରେ ଯେ । ୨ ।<br>
ଯହିଁ ବିଷ୍ଣୁପଦ ସ୍ଥିତି । ବିଦେହେ ଗତି ବାଞ୍ଛନ୍ତି ।<br>
ବ୍ରହ୍ମଯୋନି ପ୍ରେତଶିଳା । ହୋଇଛନ୍ତି ମେଳା ଯେ । ୩ ।<br>
ଫଲ୍‌ଗୁ ସରିତ ବିଟପ । ବିଦାରିଲେ ତାର ଗାପ ।<br>
ମତ୍ସ୍ୟ ସହ ସ୍ୱଚ୍ଛଜଳ । ଜାତ ତତ୍କାଳ ଯେ । ୪ ।<br>
ରଜ ପିଣ୍ଡ ଦାନେ ମୋକ୍ଷ । ରହସ୍ୟ ଯହିଁ ପ୍ରତ୍ୟକ୍ଷ ।<br>
ଶୁଦ୍ଧାଶୁଦ୍ଧ କାଳ ନାହିଁ । ସାକ୍ଷୀ ବୈଦେହୀ ଯେ । ୫ ।<br>
ତହିଁ ପିଣ୍ଡଦାନମାନ । ଅଗୋଚର କରି ଦେନ ।<br>
ପାତକୀ କରେ ପବିତ୍ର । ସେ ଗୟାକ୍ଷେତ୍ର ଯେ । ୬ ।<br>
ରାଜଧାନୀ ପୁଷ୍ପପୁର । ସହଜେ କୁନ୍ତଳ ପର ।<br>
ସ୍ୱେଳ କାଞ୍ଚି ତାର ତଳ । ଏତେ ମଞ୍ଜୁଳ ସେ । ୭ ।<br>
ବିଦଗ୍ଧ ରାକ୍ଷସ-ପୁରୀ । ଅସମାନ-ମାନୁ କରି ।<br>
ନଗରମାନଙ୍କ ମୋକ୍ଷ । ତହିଁକି ଲକ୍ଷ ଯେ । ୮ ।<br>
ଛଦ୍ମ ନୁହଇ ଏ ପୁଣ । ସଦ୍ମ ରତନେ ନିର୍ମାଣ ।<br>
ପଦ୍ମ ସକାଶରୁ ଜାଣି । ଦିବା ରଜନୀ ଯେ । ୯ ।<br>
ନାନାରତ୍ନ-ପ୍ରଭା ଧରି । ନଭ ଶତବାଡ଼ ସରି ।<br>
ଦେଖାଇବେ କେଉଁ ଜ୍ୟୋତି । ତାରକା-ପନ୍ତି ଯେ । ୧୦ ।<br>
ପ୍ରଭାହୀନ ପ୍ରଭାକର । ହିଙ୍ଗୁଳୀ କୁତୁକୀ ସାର ।<br>
ଉଡ଼ାଇ କାକଡ଼ ଚକ୍ରୀ । ଏମନ୍ତ ତର୍କି ଯେ । ୧୧ ।

ଜଗତ-ବିଳାସୀ ରମା । ସନ୍ନିଧେ ଯାଉଁ ଚନ୍ଦ୍ରମା ।
ଭାବନ୍ତ ସେ ଆଦରଶ । ସ୍ଥାନ ପାରସ ଯେ ।୧୨।
ତୋରଣା ବିବିଧ ରତ୍ନେ । ପ୍ରାସାଦେ ଖଞ୍ଜିତ ଯତ୍ନେ ।
ବଲ୍ମୀକରେ .ଇନ୍ଦ୍ରଗୃହ । ଜାତସ୍ୱରୂପ ସେ ।୧୩।
ଯହିଁରେ ମଣ୍ଡପମାନ । ଯଥା ପୁଷ୍ପକ ବିମାନ ।
ଯେଣ ପୁଣ୍ୟଜନ ବର । କି ଶୋଭାକର ସେ ।୧୪।
ଗୃହେ ମଣିମୟ ଝୁଳ । ବଉଳ-ଝରା ପ୍ରବାଳ ।
ମହାରଜତ ରଜତ । ବାଡ଼ ନିର୍ମିତ ଯେ ।୧୫।
ମାଣିକ୍ୟ ମର୍କତ ମିଶ୍ରା । ପିତୁଳୀ ଚିତ୍ର ରଚନା ।
ଲତା ମହୀରୁହ ଡାଳୀ । ତହିଁରେ ଝୁଲ ଯେ ।୧୬।
କଳଶ ହୀର ବୈଡ଼ୂର୍ଯ୍ୟ । ପ୍ରକାଶମାନ ସେ ତେଜ ।
କି ଶ୍ୱେତ ପୀତ ପତାକା । ଏମନ୍ତ ଶଙ୍କା ଯେ ।୧୭।
ନୀଳମଣି ସ୍ଫଟିକର । ଯହିଁ ପାବଚ୍ଛ ଚତ୍ୱର ।
ମୁକୁତା ଗୁଚ୍ଛା ଝୁମର । ବିତାନ ତାର ଯେ ।୧୮।
କଣି ବଦର ସଙ୍ଗତେ । ଶିଶୁ କ୍ଷେପଣ କରନ୍ତେ ।
ମାତଙ୍ଗୀ ଯୋଗ୍ୟ ହୁଅନ୍ତି । ମାତଙ୍ଗ-ମୋତି ଯେ ।୧୯।
ଯହିଁ ଅବଗାହ ସର । ବିସ୍ତୃ ପଥ ମନୋହର ।
ତହିଁ ସ୍ନାନବିଧି ସାରୁଁ । ସେ ପୁରଖାରୁ ଯେ ।୨୦।
ପୁଞ୍ଛିଲେ କୁନ୍ଦ କାରକ । ନ ଦେଖାନ୍ତି ସମ୍ମୁଖକ ।
ଆର୍ଦ୍ରବାସେ ସ୍ତନ ଗୃହୀଁ । ଆତଙ୍ଗ ବହ୍ନି ଯେ ।୨୧।
ଆଣିଲେ ପୁଳନ୍ଦ ବାର । ମୟୂର ପୁଚ୍ଛ ଝୁମର ।
ବିବନ୍ଧ କେଶ ଅନାଇ । ବେଗେ ଲୁଚଇ ଯେ ।୨୨।
ବକା ନଯିବ ଏ ବ୍ୟଥା । ଜନ୍ମି ପରସ୍ପର କଥା ।
କାଠ ବ୍ୟାଘ୍ର-ନଖକୁଳ । ବିକବା ଝୁଲ ହେ ।୨୩।
ସେ ପାଟଳିପୁତ୍ରପୁର । ନୃପତି ଧର୍ମସାଗର ।
ବଂଶ ବରଷ ଲଭିତ । ତାହାର ସୁତ ଯେ ।୨୪।
ଏମନ୍ତ ସୁନ୍ଦର ଈଶ । କାମଦେବ ତାହା ବେଶ ।
ଧର 'ସୁନ୍ଦର' ବୋଲାଏ । ପୌଣ୍ଡ୍ରୀକ ପ୍ରାପ୍ତେ ଯେ ।୨୫।

□□□

# ଗ୍ରୀଷ୍ମଋତୁ ବର୍ଣ୍ଣନା

(ରସକଲ୍ଲୋଳ)

ଦୀନକୃଷ୍ଣ ଦାସ

(ରାଗ—ଆହାରି)

କ୍ରମେ ମଧୁ ଶେଷ ହୋଇଲା ପ୍ରବେଶ ହୋଇଲା ଗ୍ରୀଷମ ସମୟେ ।
କରମାଳିକର ମହା ଖରତର କମଳକୁମାର ପରାୟେ ।
ସୁଜନେ, କି କହିବା ମହା ତପତ,
କରାଇଲା ନୃତ୍ୟ ପଥିକ ପଦକୁ ସଂଗ୍ରାମ-ଭୂମି ଅଶ୍ୱମତ । ୧ ।
କୁଶଳନର୍ତ୍ତକୀ ଭ୍ରମରୀ ପରାୟେ ଭ୍ରମିଲେ ବାତଚକ୍ରମାନେ ।
କୁଟୁମ୍ବୀ ଧନଜନ ମନ ପରାୟେ ସନ୍ତାପି ହେଲେ ଏକାଦିନେ ।
ସୁଜନେ, କୃଶ ହୋଇଲା ନଦୀଜଳ,
କାନ୍ତ ଧନରସବହୀନେ ଯେମନ୍ତ ଦଶନ୍ତ ବାରବଧୂକୁଳ । ୨ ।
କୁରଙ୍ଗ-ନୟନା ନୟନ-ତରଙ୍ଗ ବଳି ମୃଗତୃଷ୍ଣା ଦିଶିଲେ ।
କଳାମେଘ କୋଳେ ବିଜୁଳି ପରାୟେ ବନେ ବନଅଗ୍ନି ହସିଲେ ।
ସୁଜନେ, କାହିଁ ତୃଣରାଜେ ଫୁଟନ୍ତି,
କାମିନୀ-ସୁରତକାଳେ ମନମନ ଶବଦ ପରାୟେ ଘଟନ୍ତି । ୩ ।
କୃପଣ ସାମନ୍ତ-ସେବକ ପରାୟେ ତାପେ ଜର୍ଜର ସୂର୍ଯ୍ୟକାନ୍ତ ।
କାନ୍ତରହିତ କାନ୍ତା ପ୍ରାୟେ ହୋଇଲେ ସରସୀମାନେ ବେଶବନ୍ତ ।
ସୁଜନେ, କେବଳ ଭକ୍ତରଙ୍କ ପ୍ରାୟେ,
କଚ୍ଛପ ମତ୍ସ୍ୟ ମଣ୍ଡୂକମାନଙ୍କର ଦୁର୍ବଳ ହୋଇଗଲା କାୟେ । ୪ ।
କମଳ ବିରହେ କରୀବର ରହେ ମହାଗହନ ଆଶ୍ରେ କରି ।
କର୍ଦ୍ଦମରେ ପଡ଼ି ଫେନମୁଖେ ରଡ଼ି ଗୁଡ଼ନ୍ତି ଗଣ୍ଡକ ବଇରୀ ।
ସୁଜନେ, କୁଞ୍ଜ ଭିତରେ ପକ୍ଷୀମାନେ,
କେବଳ ଯୋଗୀ ଧ୍ୟାନ କଲା ପରାୟେ ନିଷ୍ଟଳେ ରହିଲେ ମଉନେ ।୫।

କରିବାକୁ ପ୍ରାଣ ରକ୍ଷା ନିଜ ପ୍ରାଣ ପରକୁ ଦେଲା ପ୍ରାୟ ହୋଇ ।
ବୋକ ମୃଗ ଯାଇ ଭୟକୁ ପକାଇ ସିଂହ ଗୁମ୍ଫାରେ ହେଲେ ଠିଇ ।
କୋକିଳେ, କୁଣ୍ଡଳୀକୁଳ ଏହି ରୂପେ,
କଳାପି କଳାପ ତଳରେ ରହିଲେ ପାଇ ବିପତ୍ତିକି ଆତପେ ।୬।
କାହିଁ ଗଲା ବନଲତା ଶୋଭାବନ କାନ୍ତିହତ କାନ୍ତା ପରାୟେ ।
କରିଥିଲା ଯିନା ବସନ୍ତ ତାହାକୁ ନବପଲ୍ଲବେ ତୋରାମୟେ ।
କୋକିଳେ, କାଳେ ସେ ଅନ୍ତର ହୋଇଲା,
କନ୍ଦର୍ପ ଦର୍ପରହିତ ହୋଇ ସଖା ଅଭାବେ ହୃଦରେ ଶୋଇଲା ।୭।
କୁଞ୍ଜେ କୁଞ୍ଜେ ବସି ଝିଙ୍କାରୀ ଡାକିଲେ କାମକେଳି ବାଟ ପଡ଼ିଲା ।
କୁସୁମକାଣ୍ଡ ମଣ୍ଡି ହୋଇ ଅର୍ଜ୍ଜୁନ ବିଯୋଗୀ ହୃଦୟ ଛାଡ଼ିଲା ।
କୋକିଳେ, କେଉଁ ପଥିକ ତାପବଳେ,
କରନ୍ତେ ଗମନ ଶ୍ରମ ପାଇ ଯାଇଁ ବସନ୍ତି ବଟୁପାଦତଳେ ।୮।
କୃପଣ ଧନ ସଞ୍ଚିଲା ପ୍ରାୟେ ମଧୁ ସଞ୍ଚିଲେ ମଧୁକରମାନେ ।
କେ ଜଳଛତ୍ର ଯବଶମାନ ଦେଲେ ବ୍ରାହ୍ମଣ କରେ ସ୍ଥାନେ ସ୍ଥାନେ ।
ସୁଜନେ, କଉଁ ଈଶ୍ୱର-ଅନୁଗ୍ରହୀ,
କର୍ପୂର ଚନ୍ଦନ ଅଙ୍ଗେ ବୋଳିହୋଇ ଧାରାମଣ୍ଡିତ ପୁରେ ରହି ।୯।
କେ ଗୀତ କବିତ୍ୱ ବେଣୁ ବୀଣା ନୃତ୍ୟ ରଙ୍ଗେ ଦିନମାନ ହରନ୍ତି ।
କେ ବସି ଏକାନ୍ତେ କାମିନୀ ସଙ୍ଗତେ ଚନ୍ଦନ ପିଚକା ମାରନ୍ତି ।
ସୁଜନେ, କେ କରେ ନଉକା-ବିହାର,
କେ ସ୍ୱେଦ ଭୟରେ କରତଳୁ ତାଳବୃନ୍ତ ନ କରଇ ବାହାର ।୧୦।
କେ ଦିନ ଶେଷରେ ଦିନକର କରେ-ତାପ ପାଇ ଜଳେ ବୁଡ଼ଇ ।
କେ ମହାବିକଳେ ବସି ଶୀତସ୍ଥଳେ ଶୀତଳ ପବନ ଲୋଡ଼ଇ ।
ସୁଜନେ, କେତେ କହିବି ଏ ପ୍ରସଙ୍ଗ,
କେବଳ ଶୀତକାରକ ଦ୍ରବ୍ୟ ବିନୁ ଆନ ଲୋଡ଼ିଲା ନାହିଁ ଅଙ୍ଗ ।୧୧।
କାନ୍ତ ପ୍ରବଳ ଗ୍ରୀଷ୍ମରେ ବିକଳ ହୋଇ ସକଳ ଗୋପାଙ୍ଗନା ।
କରିବେ ବୋଲି ଜଳକ୍ରୀଡ଼ା ଚଞ୍ଚଳ ହୋଇଲେ ଚଞ୍ଚଳନୟନା ।
ସୁଜନେ, କମଳା କୁଟିଳା କୁନ୍ତଳା,
କାମକେଳି-କଳା-କୁଶଳା, ସୁଶୀଳା, କେତକୀ, ଗୌରୀ, ପ୍ରେମଶୀଳା ।୧୨।

କରୀ-କୁମ୍ଭସ୍ତନା, କୋକିଳ-ବଚନା, କୁନ୍ଦକଳି, ଗୁରୁଦଶନା ।
କୁଟିଳ-ଦଶନା, ପ୍ରସନ୍ନବଦନା, ଶ୍ରୀକୃଷ୍ଣଚନ୍ଦ୍ର-ସ୍ନେହଧେନା ।
ସୁଜନେ, କୂପକ-ନିତମ୍ବଶୋଭନା ।
କେଶରୀମଧ୍ୟମା, କଉତୁକସୀମା, କୁଞ୍ଜବନକେଳି-ଲୋଭନା ।୧୩।
କଳାକରହାସୀ, କମଳ-ସୁବାସୀ, କ୍ରୀଡ଼ା-ମାନସ-କଳହଂସୀ ।
କୃଷ୍ଣ-ମନ-ମୀନ-ଆକର୍ଷି-ବଡ଼ଶୀ କନ୍ଦର୍ପ-ଦର୍ପ-ତମ-ଶଶୀ ।
ସୁଜନେ, କାମତରଙ୍ଗିଣୀ ତରୁଣୀ,
କରନ୍ତେ ଗମନ ଅତି ଶୋଭାବନ ହସାଇ ଧରଣୀ ସରଣୀ ।୧୪।

□□□

## ଦେବକନ୍ୟାଙ୍କ ସ୍ତୁତି

ଭୂପତି ପଣ୍ଡିତ

ଗ୍ୟାନ ବୋଲନ୍ତି ମନ ଶୁଣ  ଶ୍ରୀ ଶୁକଦେବଙ୍କ ବଚନ ॥
କହନ୍ତି ଶୁଣ ନୃପମଣି  ବିରହେ ସକଳ ଗୋପିକା ॥
ସମେ ହୋଇଲେ ଗୃହଭାଗ  ଖୋଜନ୍ତି ବନ ଗୃହେଦଗ ॥
ପୂର୍ବେ ଯେ ବ୍ରଜାଙ୍ଗନା ପଶି  ପଶ୍ଚିମ ଦିଗେ ମୁନି-ଅଂଶୀ ॥
ଉତ୍ତରେ ଅମର ଦୁହିତା  ଦକ୍ଷିଣେ ନିଗମ ବନିତା ॥
ଯେ ଯାହା ଭାବ ଅନୁସାରେ  କୃଷ୍ଣଙ୍କୁ ଡାକନ୍ତି ବନରେ ॥
ଚତୁର୍ଥ ଦଶା ବିରହର  ଗୁଣ ଉଚ୍ଚାର ଉଚ୍ଚସ୍ୱର ॥
ଦେବକନ୍ୟାଏ ବନେ ଡରି  ସେ ନିଜ ଶକତି ସୁମରି ॥
ଜ୍ଞାନ ପାଇଲେ ଛାଡ଼ି ଭ୍ରମ  ଜାଣିଲେ କୃଷ୍ଣ ପୂର୍ଣ୍ଣବ୍ରହ୍ମ ॥
ଆମ୍ଭେ ସକଳେ ଦେବଅଂଶୀ  ଏ କୃଷ୍ଣ ଶ୍ରୀଗୋଲୋକବାସୀ ॥
ଚେତିଲେ କୃଷ୍ଣଙ୍କୁ ଚେତାଇ  ଡାକିଲେ ବେଦାନ୍ତ ମିଶାଇ ॥

କୃଷ୍ଣର ଦେହ ସେ କାମିନୀ  ବେଦାନ୍ତ ମତ ତତ୍ତ୍ୱଜ୍ଞାନୀ ॥
ସ୍ତୁତିରେ ଶୁଣ ନୃପଗଣ  ଯେ ଦେବକନ୍ୟାଙ୍କ ବଚନ ॥
ହେ ନିତ୍ୟ ସତ୍ୟ ତତ୍ତ୍ୱ ନିଜ  ସଚ୍ଚିଦାନନ୍ଦ ବ୍ରହ୍ମବୀଜ ॥
ହେ ନିରଞ୍ଜନ ନିରାକାର  ନିରବଲମ୍ବ ନିରାଧାର ॥
ତୋହର ଆଦି ଅନ୍ତ ନାହିଁ  ନୂତନ ପୁରାତନ କାହିଁ ॥
ବାଳ ଯୁବକ ଧୈର୍ଯ୍ୟ ବୃଦ୍ଧ  ତୋହର ନାହିଁ ଜନ୍ମ ବଧ ॥
ଦୀର୍ଘ ବା ପ୍ରତ ପୁଷ୍ଟ କ୍ଷୀଣ  ଉଚ୍ଚ ବା ଓଚ୍ଛ ମଧ୍ୟମାନ ॥
ତୁ ନୋହୁ ଅଳପ ବହୁତ  ଅବ୍ୟସ୍ତ ଅପୂର୍ବ ଅଥିତ ॥
ଶ୍ୱେତ ଅସିତ ପୀତାରୁଣ  ତୋହର ନାହିଁ ବର୍ଣ୍ଣ ଚିହ୍ନ ॥
ତୋତେ ନ ଦେଖଇ ଲୋଚନ  ଶୁଣି ନ ପାରଇ ଶ୍ରବଣ ॥
ଜିହ୍ୱା ନ ପାରଇ ବଖାଣି  ମନ ନ ପାରେ ଅନୁମାନି ॥
ତୋ ବର୍ଣ୍ଣ ବେଦରୁ ବାହାର  ଠୂଳ ଶୂନ୍ୟରୁ ଅଭ୍ୟନ୍ତର ॥
ତୁ ଦଶଦିଗରେ ସମାନ  ଅଚ୍ଛିଦ୍ର ସର୍ବଜ୍ଞ ସମ୍ପୂର୍ଣ୍ଣ ॥
ସକଳ ସ୍ଥାନେ ମଧ୍ୟ ତୋର  କେବଳ ଅମୂଲ୍ୟ ଅପାର ॥
ତୋ ମଧ୍ୟେ ଅଶେଷ ସଂସାର  ତୁ ନୋହୁ କାହାର ଭିତର ॥
ବ୍ରହ୍ମାଣ୍ଡ ଅନ୍ତର ବାହାରେ  ଅନଳ ଜଳ ପବନରେ ॥
ଖୋଜିବା ତୋ ନ ଥିବା ସ୍ଥାନ  ନ ପାଇ ଅଣୁର ପ୍ରମାଣ ॥
ସମ ସମ୍ପୂର୍ଣ୍ଣ ସର୍ବ ସ୍ଥାନେ  ଜୀବ ଅଜୀବ ଠୂଳ ଶୂନ୍ୟେ ॥
ତ୍ରିଗୁଣ ତ୍ରିବେଦ ତ୍ରିପୁର  ଅଶିକ୍ଷା ଶକ୍ତି ଏ ତୋହର ॥
ତୋର ଅଶିକ୍ଷା ଶକ୍ତି କର୍ମ  କର୍ମେ ଦେବାଧିଦେବେ ଭ୍ରମ ॥
କର୍ମ ଅଧୀନ ଏ ଜଗତ  କର୍ମର ପଥେ ଆତଯାତ ॥
ଉତ୍ପତ୍ତି ସ୍ଥିତି ପୁଷ୍ଟି କ୍ଷୟେ  ଏ ଗୁଢ଼ କଥା କର୍ମମଧ୍ୟେ ॥
କାୟ ବଚନ ମନେ ଧର  ଏ ତିନି ପଥେ କର୍ମ କର ॥
ଏ ତିନି ପଥେ ଅଗୋଚର  ଏଣୁ ତୁ କର୍ମରୁ ବାହାର ॥
କର୍ମ ନ ପାରେ ତୋତେ ଛୁଇଁ  ଜଳେ ନ ଛନ୍ତେ ଯେସ୍ନେ ଛାଇ ॥
କର୍ମ ଯେ ତୋହର ଅଧୀନ  ତୁ ଥାଉ କର୍ମ ଠାରୁଁ ଭିନ୍ନ ॥
କର୍ମ କେବଳ ତୋର ମାୟା  ଦେହୁ ଜନ୍ମଇ ଯେସ୍ନେ ଛାୟା ॥
ଦେହର ତହିଁ ଶ୍ରମ ନାହିଁ  ଏ ରୂପେ ସୃଷ୍ଟି ତୋର ସହିଁ ॥

ନିଶ୍ବାସ ଅତଯାତ ପ୍ରାଏ ଅକ୍ଳେଶେ ଉତ୍ପତ୍ତି ପ୍ରଳୟେ ॥
ହୁଅଇ ଅଶେଷ ସଂସାର ଏମନ୍ତ ମହିମା ତୋହର ॥
ତୋର ତୁଳନା ଅଛୁ ତୁହି ଆନ ଉପମା ତୋର ନାହିଁ ॥
ବାସନା ବାସୁଦେବ କହି ଏ ଅନୁମାନ ନ ଘଟଇ ॥
କସ୍ତୁରୀ କର୍ପୂର ଚନ୍ଦନ ବିବିଧ ଫଳଫୁଲମାନ ॥
ଏହାଙ୍କ ମଧ୍ୟେ ଥାଇ ବାସ ଅଦୃଶ୍ୟ ପ୍ରତ୍ୟକ୍ଷେ ପ୍ରକାଶ ॥
ବାସନା ଅବଲମ୍ବେ ଥାଇ ପବନ ସଙ୍ଗତେ ଚଳଇ ॥
ଏଣୁ ଏ ବାସନା ବିଗ୍ରହ ତୋତେ ନୁହଇ ପଟାନ୍ତର ॥
ରବି ଶଶାଙ୍କ ଅଗ୍ନି ମଣି ତାରା ଜଡ଼ିତ ଜ୍ୟୋତି ଗଣି ॥
ଜ୍ୟୋତି ଏ ଅବଲମ୍ବେ ଥାନ୍ତି ଉଦୟ ଅସ୍ତ ସେ ହୁଅନ୍ତି ॥
ଏଣୁ ଯେ ଜ୍ୟୋତିର ବିଗ୍ରହ ନୁହଇ ଉପମା ତୋହର ॥
ପ୍ରାଣ ଯେ ଥାଇ ପିଣ୍ଡ ସଙ୍ଗେ ଆଚ୍ଛାଦି ପ୍ରତି ଅଙ୍ଗେ ଅଙ୍ଗେ ॥
ଖଗବଧିର ପ୍ରାପ୍ତ ହୋଇ ପିଣ୍ଡ ଉହାଡ଼େ ଆତ୍ମା ଥାଇ ॥
କରେ କରଏ ସର୍ବ କର୍ମ ଛାଡ଼ିର ପ୍ରାଏ ପିଣ୍ଡ ଭ୍ରମ ॥
ଏ ଆତ୍ମା କର୍ମବନ୍ଧ ହୋଇ ନାନାଦି ଘଟେ ସଞ୍ଚରଇ ॥
ଜୀବ ପରମ ବେନି ଅଂଶ ଏ ବନ୍ଧ ମୁକ୍ତିରେ ପ୍ରବେଶ ॥
ତୋହର ବନ୍ଧ ମୁକ୍ତି ନାହିଁ ଚଳ ପ୍ରଚଳ ଅବା କାହିଁ ॥
ଏଣୁ ଏ ଆତ୍ମାର ବିଗ୍ରହ ନୁହଇ ତୋତେ ପଟାନ୍ତର ॥
ମତ୍ସ୍ୟାଦି ଅବତାରମାନ ତୁ ଏଥୁ ଭିନ୍ନ ଭଗବାନ ॥
ରାଉତ ଯେହ୍ନେ ରଣେ ଯାଇ ଶରୀର କବଚେ ଢାଙ୍କଇ ॥
ସଂଗ୍ରାମେ ଶତ୍ରୁ ଜୟ କରି କବଚ ବେଗେ ପରିହରି ॥
କବଚ ନୋହେ ତା ଶରୀର ଯେ ରୂପେ ତୋର ଅବତାର ॥

□ □ □

# କାର୍ତ୍ତିକ ମାହାତ୍ମ୍ୟ : ସୁଶୀଳଚରିତ

**ମହାଦେବ ଦାସ**

ଶୁଣ ହେ ବିପ୍ର ଧର୍ମଦତ୍ତ । ଯେ ପୂର୍ବେ ପ୍ରଚ୍ଛନ୍ନ ଉକତ ॥
ସେ ରାଜା ଚୈଳ ଚକ୍ରବର୍ତ୍ତୀ । ଧର୍ମେ ନିଷ୍ଟସ୍ଥ ତାର ମତି ॥
ସେ ବିଷ୍ଣୁ ଦାସଙ୍କ ସଙ୍ଗତେ । ଗୟାକୁ ଗମନ କରନ୍ତେ ॥
ମିଳିଲେ ମୃଦ୍ଗଲ ପାଶେ । ଚରଣେ ନମିଲେ ବିଶେଷେ ॥
କଲ୍ୟାଣ କଲେ ମୁନିବର । ରାଜା କହଇ ଯୋଡ଼ି କର ॥
ହେ ଗୁରୁ ଶୁଣ ସାବଧାନେ । ଆମ୍ଭେ ବିବାଦୀ ବେନି ଜନେ ॥
ଧର୍ମ ପଚୃର ଆସିଅଛୁ । ଯେ ଯାହା କର୍ମେ ଅର୍ଜିଅଛୁ ॥
କହିବୁ ତୁମ୍ଭ ଆଗେ ସତ । ତୁମ୍ଭେ ବୁଝିବ ବେନି ମତ ॥
ଅଧିକ ହେବ କାହା ଧର୍ମ । ତୁମ୍ଭେ କହିବ ଯଥାକର୍ମ ॥
ପ୍ରଥମେ ମୋର ଧର୍ମ ଶୁଣ । ମୋ ଇଷ୍ଟଦେବ ନାରାୟଣ ॥
ତାର ସନ୍ତୋଷେ ମୋର ବୁଦ୍ଧି । ନିତ୍ୟ କରଇ ପୂଜାବିଧି ॥
ଯାବତ ଅରଜଇ ଧନ । ଦାନେ ସନ୍ତୋଷ ମୋର ମନ ॥
କ୍ଷୁଧାର୍ତ୍ତୀ ଅତିଥି ପ୍ରଦେଶୀ । ଏହାଙ୍କୁ ଅନ୍ନ ଦେଇ ତୋଷି ॥
କରଇ ଧର୍ମ କୀର୍ତ୍ତି ମାନ । କୂପ ତଡ଼ାଗ ଉପବନ ॥
ଗୋଶାଳା ଧର୍ମଶାଳା ଘର । ନିରକ୍ଷ ଜନଙ୍କ ମନ୍ଦିର ॥
ପ୍ରାସାଦ ପ୍ରାକାର ମଣ୍ଡପ । ବିଜେ କରାଇ ବିଷ୍ଣୁ ରୂପ ॥
ଆଧି ଉପାଧିରେ ଭିଆଇ । ଯତନେ ଛନ୍ଦଦାନ ଦେଇ ॥
ଗ୍ରୀଷମକାଳେ ଜଳଦାନ । ସର୍ବଦା କାଳେ ମିଷ୍ଟ ଅନ୍ନ ॥
କ୍ଷୁଧାର୍ତ୍ତ ଜନ ଗ୍ରାସେ ଆଞ୍ଚି । ନିରତେ ଦେଇଥାଇ ଯାଚି ॥
ରାଜସୂୟାଦି ଯଜ୍ଞ ଯେତେ । କରୁଥାଇ ମୁଁ ବିଧିମତେ ॥
ଆବର ଦେଶ କାଳ ଦିନେ । ସୁପାତ୍ରେ ଦାନ ଶୁଦ୍ଧମନେ ॥

ଏମନ୍ତେ ଧର୍ମ ମୋର ଯେତେ । ସଂକ୍ଷେପି କହିବି ମୁଁ କେତେ ॥
ତୁମ୍ଭେ ଏ କଥା ଅନୁସର । ବୁଝିବା ବିପ୍ରଙ୍କୁ ପଚାର ॥
ଏ ଧର୍ମ କରଅଛୁ ଯେତେ । ଲକ୍ଷ୍ୟ କି ମୋ ଧର୍ମ ସଙ୍ଗତେ ॥
ଏ ବାଣୀ ଶୁଣି ବିଷ୍ଣୁ ଦାସ । କହୁଛି ଯାଜ୍ଞିକର ପାଶ ॥
ବୋଲଇ ଶୁଣ ସାବଧାନେ । ମୁଁ ଦ୍ୱିଜ ଥାଇଁ ତୋଷମନେ ॥
ତୁଳସୀ ବୃକ୍ଷ ସେବାକରି । ଗୋବିନ୍ଦ ନାମ ମନେ ଧରି ॥
ବେଦାଧ୍ୟୟନ କରି ମୁଖେ । ଦିନ ବଞ୍ଚଇ ଦୁଃଖ ସୁଖେ ॥
ଏଥୁ ମୋ ଆନ ଧର୍ମ ନାହିଁ । ନୃପତି ତୁଲେ ବାଦ କାହିଁ ॥
ତୁମ୍ଭେ ଏ ଧର୍ମ ଅନୁସରି । ରାଜାଙ୍କୁ କହ ବୋଧ କରି ॥
ଏ ବାଣୀ ମୃଦ୍ଗଲ ଶୁଣି । ଉତ୍ପ୍ରାଧ କରି ମନେ ଗୁଣି ॥
ଜାଣିଲେ ବିପ୍ର ଧର୍ମ ଶ୍ରେଷ୍ଠ । ନୃପତି କରୁଛି ଅନଷ୍ଟ ॥
ସ୍ୱଭାବେ ରଜଗୁଣ ଫଳେ । ତାମସ ଉପୁଜଇ ବଳେ ॥
ଏ କଥା ଉଚିତ ଏହାର । ଆମ୍ଭେ କହିଲୁ ନୃପବର ॥
କି ଅବା ନୋହିବ ସନ୍ତୋଷ । ଏ ଆମ୍ଭ ଯଜମାନ ଶିଷ୍ୟ ॥
ଏକେ ବ୍ରାହ୍ମଣ ମହାତପୀ । ମିଛ କହିଲେ ହେବା ପାପୀ ॥
ଏଥକୁ ଉପାୟ କରିବା । ଅନ୍ୟ ମୁଖରେ କୁହାଇବା ॥
ଏତେ ବିଚାରି ମୁନିବର । ରାଜାଙ୍କୁ କହନ୍ତି ମଧୁର ॥
ହେ ନୃପ ଶୁଣ ମନ ଦେଇ । ତୁମ୍ଭେ ଆସିଲ ଯହିଁପାଇଁ ॥
ସେ କଥା କହିବା ଛିଡ଼ିଲା । ଏବେ ଆମ୍ଭର ବାକ୍ୟ ଶୁଣ ॥
ଯାଗ ସମ୍ପୂର୍ଣ୍ଣ ହେବା ଯାଏ । ତୁ ରାଜା ଥାଅ ଏହିଠାଏଁ ॥
ବିପ୍ରହିଁ ଥାଉ ତୋର ମେଳେ । ତୁ ଅନ୍ନ ଭୁଞ୍ଜ ଯାଗଶାଳେ ॥
ବିପ୍ରଙ୍କୁ ଦେଉଥିବା ସଞ୍ଚା । ଧର୍ମହିଁ କରୁଥିବା ପଞ୍ଚା ॥
ଦେବଙ୍କୁ ହବି ଦେଇ ତୋଷି । ସମସ୍ତେ ସଭା କରି ବସି ॥
ଫେଡ଼ିବା ତୁମ୍ଭର ସନ୍ଦେଶ । ଶୁଣି ନୃପତି ମନ ତୋଷ ॥
ଗୁରୁଙ୍କ ଆଜ୍ଞା ଘେନ ଶିରେ । ଅନ୍ନ ଭୁଞ୍ଜଇ ତାଙ୍କ ଘରେ ॥
ରାନ୍ଧଣା ସଞ୍ଚା ବସାଘର । ବିପ୍ରଙ୍କୁ ଦେଲେ ମୁନିବର ॥
ସେ ବିପ୍ର ପାଇଣ ସମ୍ମାନ । ସ୍ୱହସ୍ତେ ପାକ କଲେ ଅନ୍ନ ॥
ବ୍ୟଞ୍ଜନ ଆଦି ଯତ୍ନକରି । ରଖିଲେ ସବୁ ପାତ୍ରେ ଭରି ॥

କବାଟ କଲ ନିଜ ହାତେ । ନଦୀକି ଗଲେ ସ୍ନାନ ଅର୍ଥେ ॥
ସ୍ନାନ କରିଣ ଗଧୂଳି ମାରେ । ପ୍ରବେଶ ହେଲେ ଆସି ଘରେ ॥
ଦ୍ୱାର କବାଟ ଫିଟିଅଛି । ଅନ୍ନ ବ୍ୟଞ୍ଜନ ନାହିଁ କିଛି ॥
ଦେଖି ବିସ୍ମୟ ବିପ୍ରବର । ମନରେ କରଇ ବିଚାର ॥
ମୁଁ ଯେ କବାଟ ଗଲି କଳି । ଫିଟାଇ ଦେଲା କେ ଅର୍ଗଳି ॥
ଅନ୍ନ ବ୍ୟଞ୍ଜନ ସବୁ ନେଲା । ଭଲ ସେ ବାଟ ଗୃହିଁଥିଲା ॥
ଏ କଥା ହୋଇଲେ ପ୍ରକାଶ । ଲୋକେ କରିବେ ଉପହାସ ॥
ବୋଲିବେ ଆହେ ବିପ୍ରବର । ଏ ପୁଣ୍ୟ ସ୍ଥାନେ ନାହିଁ ଚୋର ॥
ଆହାର ସମ୍ପୂର୍ଣ୍ଣ ନୋହିଲା । ତେଣୁ ବୋଲୁଛି ଚୋର ନେଲା ॥
ଦୋସରି ଭୋଜନ ନିମନ୍ତେ । କରୁଛି ବିଚାରିବେ ଚିତ୍ତେ ॥
କି ଅବା ସମ୍ପାଦିବେ ଚୋର । ଚୋରକୁ ଦଣ୍ଡ ଦେବେ ଧରି ॥
ସେ ଦଣ୍ଡ ଆମ୍ଭ ଯୋଗୁଁ ହେବ । ଯେତେବ ସେ ପ୍ରଭାବ ପାଇବ ॥
ସ୍ୱଭାବେ ଧନ ହୀନ ନରେ । ସେ ସିନା ଅନ୍ନ ଚୋରି କରେ ॥
ତାର ଶରୀରେ ବଳ କାହିଁ । ଗଞ୍ଜଣା ନ ପାରିବ ସହି ॥
ପ୍ରାଭବ ପାଇଲେ ମରିବ । ସେ ହତ୍ୟା ଆମ୍ଭଙ୍କୁ ଲାଗିବ ॥
କି ଅବା ଧର୍ମ-ଆତ୍ମା ଜନେ । ଚୋରକୁ ନ ଦଣ୍ଡିବେ ଜ୍ଞାନେ ॥
ଆମ୍ଭ ନିମନ୍ତେ ଦୁଃଖେ ପଡ଼ି । ପୁଣି ରକ୍ଷଣା ଥିବ ଲୋଡ଼ି ॥
ଆମ୍ଭଙ୍କୁ ରନ୍ଧାଇବେ ଅନ୍ନ । କେମନ୍ତେ କରିବା ଭୋଜନ ॥
ସ୍ୱଭାବେ ସାୟଂ କାଳ ଗଲା । ରଜନୀ ପ୍ରବେଶ ହୋଇଲା ॥
ନିଶାରେ ପୂଜା ବୈଶ୍ୱଦେବ । କେବେହେ ନିର୍ବାହ ନୋହିବ ॥
ରନ୍ଧନ ନ କରିବା ଯେବେ । ସୁଜନେ ସନ୍ତୋଷ ନୋହିବେ ॥
ଏମନ୍ତେ ଅଛି ବହୁ କ୍ଲେଶ । ଏ କଥା କଲେ ପରକାଶ ॥
ତେଣୁ ଏ ନିଜ କର୍ମ ଦୋଷେ । ଆଜ ରହିବା ଉପବାସେ ॥
ଏତେ ବିଚାରି ଦ୍ୱିଜବର । ଭୁଞ୍ଜିଲି କମଣ୍ଡଳୁ ନୀର ॥
ସନ୍ତୋଷେ ପୁହାଇଲା ନିଶି । ପ୍ରଭାତେ ସ୍ନାନ ସାରି ଆସି ॥
ଇଷ୍ଟଦେବତା ପୂଜା ସାରି । ବିଷ୍ଣୁ ଗାୟତ୍ରୀ ଜପ କରି ॥
ଏଥୁ ଅନ୍ତରେ ସେ ଯାଞ୍ଚିକେ । ଯାବତ ତରଣି ସେବକେ ॥
ହବିଷ୍ୟ ଅନ୍ନକୁ ତଣ୍ଡୁଳ । ନବୀନ ଭାଣ୍ଡ କାଠ ଜଳ ॥

ବ୍ୟଞ୍ଜନ ଅର୍ଥ ମୃଗ ଘୃତ । ଦଧି ଲବଣ ଯେବା କୃତ ॥
ଅନଳ ଆଦି ତୃଣ କଲେ । ବିଷ୍ଣୁ ଦାସକୁ ଆଣି ଦେଲେ ॥
ବିପ୍ର ତା ଦେଖି ତୋଷ ଚିତ୍ତେ । ସ୍ୱପାକ ସମ୍ପାଦ ତ୍ୱରିତେ ॥
ଦ୍ୱାରେ ସ୍ନାହାନ ବେଗେ ସାରି । କରେ ତୁଳସୀ ଜଳ ଧରି ॥
ଅନ୍ନ ବ୍ୟଞ୍ଜନ ଥିଲା ଯହିଁ । ଯାଇ ଦେଖିଲା କିଛି ନାହିଁ ॥
ଚକିତ ହୋଇ ଦ୍ୱିଜବର । ଆତ୍ମା ବୋଧିଲା ଭକ୍ତି ସାର ॥
ସେ କଥା ପ୍ରକାଶ ନ କଲା । ଉପାସେ ସେଦିନ ରହିଲା ॥
ଆରେକ ଦିନେ ବିପ୍ର ପୁଣି । ରନ୍ଧଣା ସଞ୍ଜା ଦେଲେ ଆଣି ॥
କ୍ଷୁଧାର୍ତ୍ତ ହୋଇ ବିଷ୍ଣୁ ଦାସ । ସେଦିନ ରାନ୍ଧିଲା ପାୟସ ॥
ଶୀତଳ ଅର୍ଥେ ପତ୍ରେ ବାଢ଼ି । ଆପେ ବସିଲା ଦ୍ୱାର ମାଡ଼ି ॥
କ୍ଷୁଧାରେ ପାଇ ବଡ଼ ଶ୍ରମ । ଅଳପ ଆକର୍ଷିଲା ଘୁମ ॥
ତକ୍ଷଣେ ତେଜିଲା ଅଳସ । ଚାହିଁ ନ ଦେଖିଲା ପାୟସ ॥
ମନେ ହୋଇଲା ଆତ୍ମା କ୍ରୋଧି । ଉଦକ ପାନେ ଆତ୍ମା ବୋଧି ॥
ପୁଣିହିଁ ଚତୁର୍ଥ ଦିବସେ । ଅନ୍ନ ରାନ୍ଧିଲା ନିରଳସେ ॥
ସତ୍ୱରେ ପଖାଳି ପତ୍ରର । କ୍ଷୁଧାରେ ହୋଇ ତତପର ॥
ଅନ୍ନ ରାନ୍ଧିଲା ଯତ୍ନ କରି । କରେ ଉଦକ ଚୁଳୁ ଧରି ॥
ଗୋବିନ୍ଦ ରୂପ ମନେ ହେଜି । ଧ୍ୟାନ ଗୋଚରେ ଚକ୍ଷୁ ବୁଜି ॥
ବିଷ୍ଣୁଙ୍କୁ କଲା ନିବେଦନ । ଚାହିଁଲା ପାତ୍ରେ ନାହିଁ ଅନ୍ନ ॥
ନ ଦେଖି ବିମୁଖ ହୋଇଲା । ବିଚାରେ ମୋର କର୍ମ ଭଲ ॥
କେଉଁ କ୍ଷୁଧାର୍ତ୍ତ ଦୀନ ଜନ । ନିତ ହରଇ ମୋର ଅନ୍ନ ॥
ଆତ୍ମା କରଇ ତାର ତୋଷ । ଏ ମୋର ପୂର୍ବ ଭାଗ୍ୟ ଯଶ ॥
ଏମନ୍ତ ମନେ ବିଚାରିଲା । ସେ ଦିନ ଉପବାସ କଲା ॥
ଏହି ପ୍ରକାରେ ପ୍ରତିଦିନ । କେ ଘେନି ଯାଏ ତାର ଅନ୍ନ ॥
ନୟନ ପିଙ୍ଗୁଡ଼ିଲା ମାତ୍ରେ । ଅନ୍ନ ନ ଥାଇ ଆଉ ପାତ୍ରେ ॥
ଏମନ୍ତେ ସପ୍ତ ଦିନ ଗଲା । ବ୍ରାହ୍ମଣ ମନେ ବିଚାରିଲା ॥
କେ ହରୁଅଛି ଅନ୍ନ ମୋର । ମୋତେ ତ ନ ହେଲା ଗୋଚର ॥
କି ସେ ଦେବତା ଭୂତ ପ୍ରେତ । କେ କରୁଅଛି ଏଡ଼େ କୃତ୍ୟ ॥
କିବା ଉରଗ ନର ଦୁଃଖୀ । ମୁହିଁ ତ ନ ପାରିଲି ଦେଖି ॥

ଆଜ ଧରିବ ବିପ୍ର ମନ । ତ୍ୱରିତେ ସାରିଲ ରନ୍ଧନ ॥
କୋଠିରେ ଭୋଜନ ସଂଯୋଗି । ଭିତରେ ବସିଅଛି ଜଗି ॥
ଏହି ସମୟେ ଏକ ନର । ଅତି ଦୁର୍ବଳ କଳେବର ॥
ବୟସେ ବୃଦ୍ଧ ଅସ୍ଥି ଚର୍ମ । ଚଣ୍ଡାଳରୂପୀ ହୀନକର୍ମ ॥
ଛିଣ୍ଡା ଲେଙ୍କଡ଼ା ବସ୍ତ୍ର ଧଡ଼ି । କଟିରେ ବାନ୍ଧିଅଛି ଭିଡ଼ି ॥
ଗଳାରେ ଲମ୍ବିଅଛି ଖଣ୍ଡେ । ପାଠ ଦଉଡ଼ି ତାର ମୁଣ୍ଡେ ॥
ଚାଲନ୍ତେ ତନୁ ଥର ଥର । ନୟନୁ ଝରୁଅଛି ନୀର ॥
କ୍ଷଣକ୍ଷଣକେ ତାହା ପୋଛି । ଆଗ ପଛକୁ ଚାହୁଁଅଛି ॥
ଅଳପ ନଇଁବା ପରାୟେ । ମନେ ବିଚାରୁଅଛି ଭୟେ ॥
ବ୍ରାହ୍ମଣ ଗୃହେ ଆସି ମିଳି । ବାଢ଼ିଲ ଅନ୍ନ ବେଗେ ତୋଳି ॥
ମନ୍ଦିରୁ ହୁଅନ୍ତେ ବାହାର । ବ୍ରାହ୍ମଣ ଡାକିଲ ପଛର ॥
କାହିଁ ନେଉଛ ଛୁଚ୍ଛା ଅନ୍ନ । ଭିତରୁ ଦେବଇଁ ବ୍ୟଞ୍ଜନ ॥
ଗୋ-କ୍ଷୀର ଘୃତ ଦଧି ଲୁଣ । ସଂଯୋଗି ଦେବି ଏହିକ୍ଷଣ ॥
ସ୍ୱସ୍ଥାନେ ବସି ଅନ୍ନ ଭୁଞ୍ଜ । ମନରୁ ଭୟ ଭ୍ରାନ୍ତି ତେଜ ॥
ଏମନ୍ତ ବିପ୍ର-ବାକ୍ୟ କର୍ଣ୍ଣେ । ଶୁଣି ଚାଣ୍ଡାଳ ଭୟେ ମନେ ॥
ଅନ୍ନ ପକାଇ ପଳାଇଲ । ଆଗେ ଯେ ଉଚ୍ଚଭୂମି ଥିଲ ॥
ଝୁଣ୍ଟି ପଡ଼ିଲ ମୁହଁମାଡ଼ି । ପିଣ୍ଡରୁ ପ୍ରାଣ ଗଲ ଛାଡ଼ି ॥
ତା ଦେଖି ବିଷ୍ଣୁଦାସ ଧାଇଁ । ଅତି ଆକୁଳ ମନ ହୋଇ ॥
ଅନ୍ନ ଶ୍ୱେରକୁ ତୋଳି ବେଗେ । ଦେଖିଲ ଜୀବ ନାହିଁ ଅଙ୍ଗେ ॥
ତାଟକା ହୋଇ ଦ୍ୱିଜବର । ମୁଖେ ସିଞ୍ଚିଲ ଶୀତ ନୀର ॥
ପତ୍ର ପଲ୍ଲବ ବେନି କରେ । ସମ୍ମୁଖେ ବିଞ୍ଚେ ଧୀରେ ଧୀରେ ॥
ନିଜ ବସନ ଘେନି ଧୂଳି । ପୋଛି ଆପଣା ଅଙ୍ଗେ ବୋଳି ॥
ନିର୍ଜୀବ ଦେଖି ତାର ଦେହେ । ବିପ୍ର ବୁଡ଼ିଲ ଶୋକ ମୋହେ ॥
ବିକଳେ କରଇ ରୋଦନ । ବୋଲଇ ଧିକ ମୋ ଜୀବନ ॥
ଏଡ଼େ ଅକର୍ମ କାହିଁ କଲି । ନଷ୍ଟପ୍ରେ ଜୀବ ଥାଉଁ ମଲି ॥
କ୍ଷୁଧାର୍ତ୍ତ ଜନ ଅନ୍ନ ଗ୍ରାସ । ମୂର୍ଖ ସ୍ୱଭାବେ କଲି ନାଶ ॥
ମୁନିଏ କହିଛନ୍ତି ପୂର୍ବେ । ଖାଇବା ଗ୍ରାସ ଭାଙ୍ଗେ ଯେବେ ॥
ସପତ ଜନ୍ମ ପରଯନ୍ତେ । ଅନ୍ନ ନ ମିଳେ କଦାଚିତେ ॥

ସେ ପ୍ରାଣୀ କୃମି ପୋକ ହୋଇ । ଛପନ ନର୍କେ ପଡ଼ି ଥାଇ ॥
ଯୁଗ ଅନ୍ତରେ ପଶୁ ଯୋନି । ଲଭଇ ପୂର୍ବ କର୍ମ ଘେନି ॥
ମୁଁ ଏହା ଜାଣଇ ସ୍ୱରୂପ । ଅଜ୍ଞାନେ ଅରଜିଲି ପାପ ॥
ଏମନ୍ତେ କରଇ ରୋଦନ । ପୁଣି ଅନେକ ବନ୍ଧୁଜନ ॥
ଆସି ମିଳିଲେ ତାର ପାଶ । ତାହାଙ୍କୁ ଦେଖି ବିଷ୍ଣୁଦାସ ॥
ବୋଲଇ ଏ ଅତିଥି-ଶ୍ରେଷ୍ଠ । ମୋ ଯୋଗୁଁ ହେଲା ପ୍ରାଣଭ୍ରଷ୍ଟ ॥
ତେଣୁ ମୁଁ ଏହାର ସଙ୍ଗତେ । ଅନଳେ ଝାସିବି ନିଶ୍ଚିନ୍ତେ ॥
ଏଥକୁ କର ଉଦଯୋଗ । ନାହିଁ ମୋ ଜୀବନରେ ଭୋଗ ॥
ଏମନ୍ତେ ବିପ୍ର ଶୁଦ୍ଧମନ । ଜାଣିଲେ ଜଗତଜୀବନ ॥
ତକ୍ଷଣେ ଆଜ୍ଞା ପରମାଣେ । ସେ ମୃତ ଶବ ଗଲା କେଣେ ॥
ଆପଣେ ଦିବ୍ୟରୂପ ଧରି । ଗରୁଡ଼ ପୃଷ୍ଠେ ବିଜେକରି ॥
ଦେଖନ୍ତି ସୁର ନର ଋଷି । ଜାଜ୍ଜ୍ୱଲ୍ୟ ଜ୍ୟୋତି ବ୍ରହ୍ମରାଶି ॥
ଅତସି ପୁଷ୍ପ କାନ୍ତି ବର୍ଣ୍ଣ । ପୀତବସନ ପରିଧାନ ॥
ଚକ୍ର କମଳ ଶଙ୍ଖ ଗଦା । ଯେ ଅଳଙ୍କାର ଅଙ୍ଗେ ସଦା ॥
ଏକୁ ଆରେକ ତେଜ କାନ୍ତି । ଜ୍ୟୋତି ଶରୀରେ ବିରାଜନ୍ତି ॥
ଶୁଭଇ ଶୁଭ ଶଙ୍ଖନାଦ । ପାଛୁଟେ ବେଢ଼ି ପାରିଷଦ ॥
ବହୁତ ସମ୍ପଦ ବେଶରେ । ମିଳିଲେ ବିଷ୍ଣୁଦାସ ଠାରେ ॥
ଚାରି ଆୟୁଧ ଚାରି ଭୁଜେ । ଘେନି ଦେବାଧି ଦେବରାଜେ ॥
ବିପ୍ରଙ୍କୁ ବେନି କରେ ତୋଳି । ଗରୁଡ଼ କନ୍ଧେ ବନମାଳୀ ॥
କୋଳେ ବସାଇ ଯାନ୍ତି ଶୂନ୍ୟେ । ଦେଖନ୍ତି ପୁରବାସୀ ଜନେ ॥
ରଜା ଯେ ଗୁରୁ ପାଶେ ଥିଲା । ତା ଦେଖି ବିସ୍ମୟ ହୋଇଲା ॥
ଗୁରୁଙ୍କୁ କହଇ ରାଜନ । କିସ ପୁଛିବି ଆଉ ପୁଣ୍ୟ ॥
ଦେଖ ବ୍ରାହ୍ମଣ କର୍ମ ଗୁଣ । ପ୍ରତ୍ୟକ୍ଷେ ଆସି ନାରାୟଣ ॥
ଗରୁଡ଼ ଆସନେ ବସାଇ । ବିପ୍ରଙ୍କୁ ନିଜ ପୁରେ ନେଇ ॥
ମୁଁ ଯେ ଅନେକ ପୁଣ୍ୟ କରି । ନୋହିଲି ବିପ୍ର ସଙ୍ଗେ ସରି ॥
ସେ ପ୍ରଭୁ ଜଗତ ଜୀବନ । ମୋତେ ନୋହିଲେ ଅବଧାନ ॥
ତେଣୁ ବିଅର୍ଥେ ଜନ୍ମ ମୁହିଁ । ଏ ଦେହେ ଥିବି କାହିଁ ପାଇଁ ॥
ବିଷ୍ଣୁ ଅଭାବେ ଯେଉଁ ପ୍ରାଣୀ । ସମ୍ପଦ ସୁଖ ପ୍ରାପ୍ତ ମଣି ॥

ଛାର ଜୀବନ ଧିକ ଧିକ । ଯାବତ ଭୋଗ ସବୁ ନର୍କ ॥
ଏଣୁ ମୋ ଦେହେ ନାହିଁ କାର୍ଯ୍ୟ । ଅନଳେ ଝାସ ଦେବି ଆଜ ॥
ଏମନ୍ତ ବୋଲି ନରସାଇଁ । ପଡ଼ିଲା ଅଗ୍ନିକୁଣ୍ଡେ ଡେଇଁ ॥
ବିଷ୍ଣୁ ଯେ ଥିଲେ ଶୂନ୍ୟମାର୍ଗେ । ତକ୍ଷଣେ ଲେଉଟିଲେ ବେଗେ ॥
ଯଜ୍ଞ ଅନଳ କୁଣ୍ଡେ ପଶି । ରାଜାକୁ ଧଇଲେ ଆକର୍ଷି ॥
ବିହମ ଗରୁଡ଼ କାନ୍ଧରେ । ବିଜୟ କଲେ ଧାଡ଼ିକାରେ ॥
ବେନି ଜାନୁରେ ବେନି ଭୃତ୍ୟ । ବସାଇ କଲେ କୋଳାଗତ ॥
ଦକ୍ଷିଣେ ଦ୍ୱିଜ ବାମେ ନୃପ । ଯେସନେ ବ୍ରହ୍ମା ଶିବ ରୂପ ॥
ମଧ୍ୟେ ସୁନ୍ଦର ଦେବରାୟ । ଶୂନ୍ୟେ ଶୁଭିଲା ଜୟ ଜୟ ॥
ପଥେ କୁସୁମ ବୃଷ୍ଟି କରି । ବୈକୁଣ୍ଠେ ବିଜେ କଲେ ହରି ॥
ସେ ବେନି ଭୃତ୍ୟଙ୍କୁ ପାରୁଶେ । ରଖିଲେ ଅତ୍ୟନ୍ତ ବିଶ୍ୱାସେ ॥
ଯେ ବିପ୍ର ନାମ ଅନ୍ତଶୀଳ । ସୁଶୀଳ ନାମେ ମହୀପାଳ ॥
ହେ ଧର୍ମଦତ୍ତ ଶୁଣ ତୁମ୍ଭେ । ସେ ବେନି ବିଷ୍ଣୁଗଣ ଆମ୍ଭେ ॥
ସର୍ବଦା ବିଷ୍ଣୁଲୋକେ ଥାଉଁ । କାର୍ତ୍ତିକ ବ୍ରତେ ପୂଜା ପାଉ ॥
ଯେ ପୂଜେ ଉଦ୍ୟାପନ କାଳେ । ସେହି ବସନ୍ତି ଆମ୍ଭ ମେଳେ ॥
ତୁ ଯେ ପୁଚ୍ଛିଲୁ ଧର୍ମଶାସ୍ତ୍ର । ତୁଳସୀ ସେବା ବିଷ୍ଣୁଭକ୍ତ ॥
ଏ ବେନି ସମ କରି ଜାଣ । କହି ଅଛନ୍ତି ନାରାୟଣ ॥
ସେ ପ୍ରଭୁ ଭକତ ବିଶ୍ୱାସ । ଭଣଇ ମହାଦେବ ଦାସ ॥

□□□

# କଳିଯୁଗ ପ୍ରସଙ୍ଗ

ଲୋକନାଥ ବିଦ୍ୟାଧର

କହନ୍ତି ଯୁଧିଷ୍ଠିର ସହଦେବ ରାଇ ଶୁଣ ତୁମ୍ଭେ ମନ୍ତ୍ରୀବର
କଳି ଯୁଗରେ ଯେ ଦେବତା ବ୍ରାହ୍ମଣ କେମନ୍ତ ଅଟେ ଆଚାର ବା
କହ କଳିଯୁଗ କଥା
କହି ଫେଡ଼ ହୃଦୁ ମନୁ ବ୍ୟଥା ବା ।୧।

ଖଡ଼ି ଧରିଣ ସହଦେବ ବୋଲନ୍ତି ଶୁଣ ତୁମ୍ଭେ ନୃପବର
କ୍ଷଣେ ରଜା ପରଜାକୁ ଦୟା ନୋହିବ ବନ୍ଧିଣ ନେବେ ସକଳ ବା
ଖାଦ୍ୟ ଥାଉଁ ଶାଧୁଥିବେ କର
କ୍ଷିଣେ ପରଜା ହେବେ କାହାର ବା ।୨।

ଘରେ ଘରେ ସବୁ ମିଛ ଉପୁଜିବ କେହି ନ କହିବେ ସତ
ବେଦନବେ ବ୍ରାହ୍ମଣେ ମୃତ୍ୟୁ ଶବଦାନ ନେଇ ଲୋକକୁ ପାତିବେ ହାତ ବା
ଘୃତ ନଦେବେଟି ଅଗ୍ନିମୁଖ
ଘରେ ଘରେ ମାଗୁଥିବେ ଭିକ ବା ।୩।

ନୀଚ ଲୋକମାନେ ଉଚ୍ଚରେ ଉଠିବେ କଉଡ଼ିରେ କରି ପ୍ରୀତି
ନୀଚ ଉଚ୍ଚ ଦୁହେଁ ସରିସମ ହେବେ ନକରିବେ ଭୟ ଭ୍ରାନ୍ତି ବା
ନିଜ ଭାଥାକୁ ଛାଡ଼ିବେ ନାରୀ
ନିଆଁ ଗିଳିବେ ସାହସ କରି ବା ।୪।

ଜାତି ଅଜାତି ଏକାକାର ହୋଇବ ଘରେ ଘରେ ହୋଇବ ଭ୍ରାନ୍ତି
ଜଉତିଷମାନେ ଲଗ୍ନ ନଜାଣିବେ ଜଳ ଅକାଳେ କରିବେ ବୃଷ୍ଟି ବା
ଜୀବଜନ୍ତୁରେ ନଥିବ ଦୟା
ଜଗନ୍ନାଥେ କରିଛନ୍ତି ମାୟା ବା ।୫।

ଝିଅ ବଭାକର କଉଡ଼ି ଘେନବେ ତହିଁ ନସରିବ ଦିନ
ଝିଅର କଉଡ଼ି ଝିଅ ଘେନଯିବ ସଂସାରରେ ବୋଲିବେ ହୀନ ବା
ଝଲ ସୁବର୍ଣ୍ଣ ଦିଶେ ଯେସନ
ଝିଅ ନଦେବେଟି କନ୍ୟାଦାନ ବା ।୬।

ନିସତ ହୋଇବେ ନିୟମ କରିବେ କେହି ନ କହିବେ ସତ
ନବ ଯୁବାସ୍ତିରୀ ଘରେ ଥାଉ ଥାଉ ବଟପୀ ସ୍ତିରୀଙ୍କ ଚାଉ ବା
ନକରିବେ ବୁଝାମଣା ରାଜା
ନଷ୍ଟେ ମରିବେ ଗୋଜନ୍ତୁ ପ୍ରଜା ବା ।୭।

ଠାହି କରିବେ ଶୂଦ୍ର ଯେ ବ୍ରାହ୍ମଣଙ୍କୁ ଠେକିଛି ଯେଉଁ ସାହାଶ୍ର
ଟଙ୍କାଠିକୁ ଧାନ ଭରଣେ ହୋଇବ ନ ମିଳିବ ଅନ୍ନ ବସ୍ତ୍ର ବା
ଠେକ କହ କିବା ଧର୍ମଗ୍ରନ୍ଥେ
ଠେକଅଛି କେଉଁ ଦେବତାଏ ବା ।୮।

ଥୋଇଲି ମାଇପ ଘର ଯେ କରିବେ ବ୍ୟାହି ମାଇପକୁ ଛାଡ଼ି
ଥାମ ଲୋକମାନେ ଥାନ ଛାଡ଼ି ଯିବେ ଅଥାମ ବସିବେ ମାଡ଼ି ବା
ଥୟେ ନୋହିବ କାହାର ବୁଦ୍ଧି
ଥେଣ୍ଟ ଗଣ୍ଡିଆ ଖାଇବେ ରୁନ୍ଧି ବା ।୯।

ଧର୍ମୀ ଲୋକମାନେ ଅଧର୍ମକୁ ଯିବେ କାହାଣକେ ନେବେ ପଣେ
ଧର୍ମ ତହିଁ ଅଛି ଅଢାଇ ବୋଡ଼କ ସମସ୍ତେ ଜଣେ ଜଣେ ବା
ଧରି ନେବେଟି ଶକଣି ଟଙ୍କା
ଧର୍ମ କାହାକୁ ନୋହିବ ସଖା ବା ।୧୦।

ଫଳିବ ନାହିଁଟି କଉଁ କୃଷିକଆଶ ବକାରେ ହୋଇବ ଟାଣ
ଫନ୍ଦାକଲେ ଫଳ ଯାକ ନଅଣ୍ଟିବ ସାହୁକୁ ନଦେବେ ଋଣ ବା
ଫଳ ଜଗୁଁ ଜଗୁଁ ନରହିବ
ଫୁଲ ଫୁଟିଲେ ଫଳ ନୋହିବ ବା ।୧୧।

ମୁଗୁଲ ଖାଇବେ ଓଡ଼ିଶା ରାଇଜ ଯୁଜେଷ୍ଟି ଅଛନ୍ତି ଦେଇ
ମଲେଟି ପରଜା ହନୁସନ୍ତୁ ହୋଇ ଭୃଥିଙ୍କର ଶାପ୍ୟ ପାଇ ବା
ମାତା ପିତା ନ ମାନିବେ ପୁଅ
ମାଇପଙ୍କଠାରେ ବଡ଼ ସ୍ନେହ ବା ।୧୨।

ରାଜା ନ ଶୁଣିବେ ପରଜା ଗୁହାରି ମନ୍ତ୍ରୀଙ୍କି ରାଇଜ ଦେଇ
ରାଇଜ ଯାକ ବାହାପିଆ ଖାଇବେ ଚଠିପତ୍ରମାନ ବନ୍ଧି ବା
ରାଜା ଜଗନ୍ନ ଯାକରେ ପଡ଼ି
ରାଜା ଯୁକେଷ୍ଟି ପ୍ରଭୁ କହନ୍ତି ବା ।୧୩।
ଛପନ କୋଟି ଜୀବ ଜନ୍ତୁ ଉପରେ ଜଗନ୍ନାଥ ପ୍ରଭୁ ଦାତା
ଛପ୍ପାଣୋଇ ସହସ୍ରେ ରାଜାଙ୍କ ଉପରେ ଓଡ଼ିଶା ରାଜା କରତା ବା
କ୍ଷଣେ ଚନ୍ଦ୍ରାକରେ ପଦ୍ମମୁଖ
ଘୁର ଲୋକା ବୋଲେ ମୋତେ ରଖ ବା ।୧୪।

□□□

## ପମ୍ପାସର ବର୍ଣ୍ଣନା

ବିଶ୍ୱନାଥ ଖୁଣ୍ଟିଆ

ପ୍ରବେଶ ରାମ ଲକ୍ଷ୍ମଣ ପମ୍ପାସର ତୀର ।
ଦେଖନ୍ତି ନିର୍ମଳ ଜଳ ଅତି ମନୋହର ।୧।
କମଳ କୁମୁଦ କୋକନଦ ନୀଳୋତ୍ପଳ ।
ମଧୁପାନେ ମତ୍ତ ହୋଇ ଚୁମ୍ବନ୍ତି ଭ୍ରମର ।୨।
ଚଉପାଶେ ବେଢ଼ିଛନ୍ତି ପୁଷ୍ପ ତରୁଚୟ ।
ବିରହୀ ଜନକୁ ସେ କରାଉଛନ୍ତି ଭୟ ।୩।
ଦେଖ ଦେଖ ଲକ୍ଷ୍ମଣ ଏ ସରୋବର ଶୋଭା ।
ଏହା ଦେଖି କେଉଁ ଜନ ନୋହିବ ଯେ ଲୋଭା ।୪।
ବିବିଧ ହଂସମାନଙ୍କେ ଦିଶଇ ସୁନ୍ଦର ।
ଡାହୁକ ତିତିରବାକ ବକେ ଶୋଭାକର ।୫।
ବିକାଶନ୍ତି ନବନବ ଚୂତାଙ୍କୁରମାନେ ।
ପ୍ରକଟି ବାସ ବାସନ୍ତ ସର୍ବ ସନ୍ନିଧାନେ ।୬।

କାମତୁଣୀ ଶରପ୍ରାପ୍ତ ଦିଶନ୍ତ ଅଶୋକ ।
ସୀତାଙ୍କ ବିଚ୍ଛେଦ କରାଉଛନ୍ତି ବହୁ ଶୋକ ।୭।
ପାଟଳୀ ପାଟଳ କାମାନଳ ପ୍ରାପ୍ତେ ଦିଶେ ।
କେତକୀ କଳିକା ମନସଜବଲ୍ଲୀ କି ସେ ।୮।
ମଲ୍ଲିକା ସଉରଭରେ ଭ୍ରମର ନିକର ।
ଧ୍ୱନିକରି ଖୋଜୁଛନ୍ତି ସର୍ବ ଦିଗନ୍ତର ।୯।
ମନ୍ଦଗନ୍ଧ ସୁଶୀତଳ ପ୍ରସରେ ନିରତ ।
କୋକିଳ ଧ୍ୱନି କରନ୍ତି ହୋଇ ମହାମତ୍ତ ।୧୦।
ଲକ୍ଷ୍ମଣ ବୋଲନ୍ତି ଦେବ ଏ ଶିଶିର ଅନ୍ତ ।
ପ୍ରବେଶ ହୋଇ ଅଛନ୍ତି ଋତୁ-ରାଜନ ବସନ୍ତ ।୧୧।
ଦେଖନ୍ତି ସେ ପମ୍ପାସରୋବରକୁ ବୁଲିଣ ।
ସୀତାଙ୍କ ବିରହେ ପୁଣି କରନ୍ତି କାରୁଣ୍ୟ ।୧୨।
ଲକ୍ଷ୍ମଣ ରାମଚନ୍ଦ୍ରଙ୍କୁ କରନ୍ତି ପ୍ରବୋଧ ।
ବୋଲେ ବାଣୀ ଶୁଣି ରାମ ଦୁଇଗୁଣ କ୍ରୋଧ ।୧୩।

□□□

## ଶାରଦୀୟ ସନ୍ଧ୍ୟା ବର୍ଣ୍ଣନା

**ଅଭିମନ୍ୟୁ ସାମନ୍ତ ସିଂହାର**

ଏ ଉତ୍ତରୁ ସୁବିଦୁଷ ସାବଧାନେ ଦେନ ରସ
ନିଶିମୁଖ ଆଗମନ ଦିବସ ଶେଷ,
ବାରୁଣୀ ବିଳାସୀ ରବି ପର୍ବେ ଉଦେ ଶଶୀ ଛବି
ରଙ୍ଗିମା ଶୁକ୍ଳିମା ମନୋହର ବିକାଶ ।
ସହଜରେ ଶରଦ କାଳ,
ଋତୁମୁଖ ଜାତଥିି ନିଶି ମଞ୍ଜୁଳ । ୧ ।

ବିସ୍ମୃତ କି ପଦ୍ମଯୋନି ସୁଧା ଅନୁରାଗ ଘେନି
ବିଶ୍ୱତୁଳନାରେ ତୁଳି କଳନା କରେ,
ଉଚ୍ଛ୍ୱାସ ଭାଗ ଉଠିଲା ଗରୁଆ ତଳକୁ ଗଲା
ଉଚ୍ଚ ନୀଚ ନୀଚ ଉଚ୍ଚ ଜଣା ବିଧିରେ ।
ସୁଧା ଅନୁରାଗ ସଙ୍ଗତେ
ସରି କରି ପାରିବ ବୋଲି କେ କେମନ୍ତେ । ୨ ।

ତାତ ସିନ୍ଧି କି ବଳିବ ବିସ୍ମରିବ କାମଦେବ
ମାଣିକ୍ୟ ହୀରା ରଥାଙ୍ଗ ଫେଡି ଦେଇଛି,
ବିଯୋଗୀ ସୁଖ ଦୁଃଖଦ ସଂଯୋଗୀ ଦୁଃଖ ସୁଖଦ
ପରସ୍ପରେ ବିରୋଧ ଭାବକୁ କରୁଛି ।
ତମନାଶ ନେତ୍ର ପ୍ରୟୋଗ
ତମେ ପଶେ ତମ୍ଭୁ ଆଶେ ଏ କି ସଂଯୋଗ । ୩ ।

ଦନ୍ତିଦନ୍ତ ସମୁଦ୍‌ଗତ ପ୍ରବାଳ ତାଙ୍କୁଣି ଏକ
ଦିଗ ବଣିକ କି ଫେଡ଼ି ଭଣ୍ଡେ ଥୋଇଛି,
ତାର ତାରତାର ମୋତି ଗୋଟି ଗୋଟିକେ ଗଣନ୍ତି
କରୁଛି ପରି ଅମ୍ବରେ ପ୍ରତେ ହେଉଛି ।
ସ୍ଥାନସ୍ଥିତ ନୀଳେନ୍ଦ୍ର ମଣି,
ଗୋଟିକେ ବିଭ୍ରମେ ଭାଳେ କି ହେବ ଗଣି । ୪ ।

ଦିନକୁ କଲେ ବିନାଶ ବାରୁଣୀରେ ହେଲେ ବଶ
ଦ୍ୟୁମଣି ଦ୍ୱିଦୋଷ ହେତୁ ସିନ୍ଧୁ ମଜ୍ଜନ,
ଦିନ ତାପ ବିନାଶନ ତମସଙ୍କୁଳ ଖଣ୍ଡନ
ପୂର୍ଣ୍ଣରୁ ମାନ ପାଇଲେ ବିଧୁ ବଦନ ।
କରି କୀର୍ତ୍ତି ଘୋଟିଲା ମହୀ,
ରଜତ ସୃଷ୍ଟି ସର୍ଜନ କଲା କି ବିହି । ୫ ।

ଶିବା ଖୋଜିଲେ ଯେ ଶ୍ରୀମ ଛନ୍ତି କି ନାହାନ୍ତି ଭ୍ରମ
ଶ୍ରୀମ ଗଙ୍ଗାକୁ ଲୋଡ଼ିଲେ ଜଟା ଫିଟାଇ,
କୁସୁମବନ୍ଧ ବ୍ରତତି ଅଦୃଷ୍ଟ ରାଜାର ଖ୍ୟାତି
ମୋତିହାରବନ୍ଧ ମତି ଚନ୍ଦ୍ରାକୁ ପାଇ ।
ଭ୍ରମରେ ଭ୍ରମରେ ଭ୍ରମନ୍ତି,
ମଧୁପ ପରାଗେ କୁମୁଦମା ଲୋଡ଼ନ୍ତି । ୬ ।

ଏକାଳକୁ ଅନୁଲକ୍ଷି ଦୁଃଖୀ ସଖୀ ହୋଇ ସୁଖୀ
ସ୍ନେହେ ଧନୀ ପାଶେ ମିଳି କହିଲେ ଛଳି
ହେ କଳାନିଧି ଆସଇ ଏ କଳାନିଧି ଦିଶଇ
ବରବରଦ ସକାଶୁ ପୂଜନ୍ତୁ ବାଳୀ
ପୋଷୁଁ ମୁଖ ସ୍ୱୀକାର ଜାଣି
ସେବା ବ୍ୟାଜେ ବଳେ ବେଶ କଲେ ମିତଣୀ । ୭ ।
ଶ୍ରୀ ବୃଷଭାନୁ-ଆତ୍ମଜା ବିଧୁ ପୂର୍ବେ କର ପୂଜା
ପ୍ରେମ ମର୍ମ ଭ୍ରମେ କଲେ ବିନତି ସ୍ତୁତି
ଜୟ ପ୍ରଭୁ ରାମଚନ୍ଦ୍ର ସଲକ୍ଷଣ ଗୁଣେ ସାନ୍ଦ୍ର
ସକଳ ମଣ୍ଡନ ସଦା ଅନନ୍ତ ଗତି
ତମ ତାପହା ଶୁଚିର
ବଳୀ ନାମରେ ମାନକ ଭ୍ରମ ନକର । ୮ ।
ଜୟ ଜୟ କଳାନିଧି ଅମୃତ କର ପ୍ରସିଦ୍ଧି
ସଦାଶିବ ଶିରୋଧାର୍ଯ୍ୟ ଉଜ୍ଜ୍ୱଳ ମୂର୍ତ୍ତି
ସୁନ୍ଦର ସୁଲକ୍ଷ ବକ୍ଷ ସୁରସୁଖଦ ଏ ଦକ୍ଷ
ଦିନ ତାପ ବିନାଶନ କୈରବପତି
ବିଧୁବର ଆହ୍ଲାଦକର
କମଳିନୀ ନାମେ ଭ୍ରମ ହେବା ଅସାର । ୯ ।
ହରିକି ବିଷ୍ଣୁର ହରି କର ବିକ୍ଷେପଣେ ଉରି
ବାହୁ କର୍ମିତ ଘୋଡ଼ାଇ ଦେଲେ ଉରଜ
ଏ ବିଭ୍ରମ ଦେଖି ସଖୀ ହରି ଭାବ ମନେ ରଖି
ସୁଧା ଚଳରେ ସହରେ ଶେଯାଇ ଶେଯ ।
ପଦ୍ମଡ଼ାଇ ଦେଲେ ଧନୀକି ।
ଅମୃତ କର ପ୍ରଶାନ୍ତ କର ମସ୍ତକି । ୧୦ ।
ତେଣେ ରସିକ ଶେଖର ମନ୍ତ୍ରି ଗୃନ୍ଧନୀ କାତର
ବିଧୁରେ ବିଧୁରେ ତୁହିଁ ଭ୍ରମେ କଥିତ ।
ନାମ ଗୁଣ ଚହ୍ନ ଅଛି ମିନ ହାନି ନକି ଇଛି
ମମ ଲୋଭ ସ୍ଥଳେ ନାମ ଭ୍ରମ କି ଜାତ ।
ଜ୍ୟୋତିଧର ନାମ ହିଁ ସତ ।
ବିଶ୍ୱର କର ରବ କେହୁ ଖଦ୍ୟୋତ । ୧୧ ।

ହାବ ଭାବ ବିତ ରଙ୍ଗ ଧର୍ମିଲ ଲପ୍ସ ପ୍ରସଙ୍ଗ
ପରସ୍ପରେ ନାଗରୀ ନାଗର ସ୍ମରଣେ ।
ଉଚ୍ଚରେ ଭାଷ କେ ବର୍ଣ୍ଣେ ସ୍ୱରଭଙ୍ଗ ଅତି ଶୀର୍ଣ୍ଣେ
ତେବେ ହେଁ ଭାବ ଭାବନା ଥାଇ କାରଣେ ।
ଦୁପ୍ପୂର୍ବାଦ ଶବଦ ଶୁଣି
ଦୁଷ୍ଟ ଅଇଲ କି ଭ୍ରମେ ହୁଅନ୍ତି ଗୁଣି । ୧୨ ।

ଆତୁରେ ରସାବ୍ଧି ବିନ୍ତ ଭାବୋତ୍କଣ୍ଠା ତରଙ୍ଗିତ
ବିଭ୍ରମ ଭଉଁରି ମଧ୍ୟେ ମନ ପତନ ।
ଭାବ ସାବଲ୍ୟ ପ୍ରବଳ ବିବଧ ପାଞ୍ଚ ଅଥଳ
କୋଳ କୂଳ ବାଞ୍ଛିତ କେବଳ ନିଦାନ ।
ମଣିରତ୍ନ ପ୍ରେମ ପୀୟୂଷ ।
ଆଶ ନାଶ ଲେଶ ନୋହେ ଲଭିଲେ କ୍ଲେଶ । ୧୩ ।

ପରସ୍ପରେ ରୂପ ଧ୍ୟାନ ତନ୍ମୟୀ ଭାବରେ ମଗ୍ନ
କେତେ ବେଳନ୍ତାରେ ନିଦ୍ରା ହେବାର ଜାଣି ।
ଭୁଣ୍ଡ ବୋଳ ନିବର୍ତ୍ତିଇ ସ୍ୱ ମିହେ ମଣ୍ଡଳ ହୋଇ
ଶଶିକି ପରିଧି ବିଧି ଶୟନ ପୁଣି ।
ଅର୍ଦ୍ଧ ଯାମେ ଅଛି ଯାମିନୀ
ଯୋଗମାୟା ଦୟାକଲେ ମାନସ ଧେନ । ୧୪ ।

ବେଦମାତା ପରିକରି ହରିଙ୍କର ନିଦ୍ରା ହରି
ମହାମାୟା ମାୟା କରି ବହନ ନେଲେ ।
କିଶୋରୀ ଶୟନ ସ୍ଥାନେ ଛାଡ଼ିଗଲେ ଅନ୍ତର୍ଦ୍ଧାନେ
ଚକ୍ଷୁ ଘଷି ବୃହାନ୍ତେ ଆଶ୍ଚର୍ଯ୍ୟ ଦେଖିଲେ ।
ଜ୍ୟୋତି ପୁଞ୍ଜ ମଧ୍ୟେ କି ରବି
ନିରେଖି କ୍ଷଣକେ ରୂପ ପାରିଲେ ଭାବି । ୧୫ ।

ବିସ୍ମରିଲେ କାନ୍ତିକଳ- ଦେଖି ଏ ମୂର୍ତ୍ତିମଞ୍ଜୁଳ
ବହ୍ନି ବହ୍ନି ଲୁହରି ଥୋଇଛି ଏ ପାଞ୍ଚେ ।
ପରସ୍ପର ଦୃଷ୍ଟି ପାତେ ବିମୋହ ହେବ ଜଗତେ
ବିଷ୍ଣୁ ବିଶ୍ୱଚନ୍ଦ୍ରା ନିକରିବେ ସୁସଞ୍ଚେ ।
ଏହା ସାହା ପାଇଲେ କାମ ।
ନ ରଖିବା ଡରେ ଯୋଗୀ ହେଲେ କି ଶ୍ୟାମ । ୧୬ ।

ଅହଲ୍ୟା ହରଣ ପାପ ସହସ୍ରାକ୍ଷ ସୁର ନୃପ
ଲଜ୍ଜା ନାହିଁ ହୃଷ୍ଟୀ ଦେଖିବାରୁ ଜାଣିଲ ।
ବିଧି, ଶଙ୍କର, କୁମାର ଶେଷ ନେବ ସୁଖ ସାର
ଏବେ ଏଥିର ହୋଇବ ପରତେ କଲ ।
ଗୁରୁ କବ ଗଣେଶ ବାଣୀ
ଗୁରୁ କବ ଗଣେଶ ବାଣୀର କାରଣୀ । ୧୭ ।
ଲକ୍ଷ୍ମୀ ବୋଲନ୍ତାଇ ଭ୍ରମେ ଦାସୀଗଣ ତ ସେ ସମେ
ଆହାସୁ ଅଛୁ ମନକୁ କହିବ କେହ୍ନି ।
ବିଶ୍ୱ ଫେର ଗତକର ମୂକତକ ଗତକର
ଶ୍ରାନ୍ତ ପାଇଁ ପହୁଡ଼ଛୁ ସମ୍ଭବେ ଏହ୍ନି ।
ସିଦ୍ଧିଦାୟୀ କ କରବାର
ନିଧି ରୂପାକୁ ହୋଇବ କ ଲକ୍ଷିବାର । ୧୮ ।
ବିଶ୍ୱଚିତ୍ତ ବଶ ପାଇଁ ପ୍ରୀତି ମୂର୍ତ୍ତିମନ୍ତ ହୋଇ
ଅଣିମାଦ୍ଧ ଦେବ ଅଣିଆଇ ଶୋଇଛୁ ।
ପାଣି ଦେବା ଗଣ୍ଡ ତଳେ ଶଶୀ କୋକନଦ କୋଳେ
ପହୁଡ଼ିବାର ଶୋଭାକୁ ହସି ଦେଉଛୁ ।
କୃଷ୍ଣବର୍ଣ୍ଣୀ ଶେଯେ ଶୟନ ।
ସଜଳ ଘନେ ସ୍ଥକତ ବିଦ୍ୟୁ ସମାନ । ୧୯ ।
ସୁରାଗ ମଣିରେ ପଦ ବହନ୍ୟାସ ହି ଏ ମୁଦ
ରଙ୍ଗବାଡ଼େ ହେମଲତା ମାଡ଼ିଲ୍ଲ ଭ୍ରବି ।
ସହଜେ ପଦ-ପଲ୍ଲବ ଅଙ୍ଗୁଳି ମଞ୍ଜୁଳି ଭାବ
ଶରଣ ରକ୍ଷଣ ଫଳ ଫଳିବ ପରି
ଲକ୍ଷା ଲେଖା ଘର୍ଘପ୍ରକ୍ଷିତ
ଅଭୟ ନୋହିବ କେ ବା ହେଲେ ଆଶ୍ରିତ । ୨୦ ।

□□□

# ଯୁଦ୍ଧ-ଯାତ୍ରା

ବ୍ରଜନାଥ ବଡ଼ଜେନା

ସାର୍‌ ଫଉଜ ହେଲେ ତିଆର          ମୁସଦ୍ଦ ମୁଷା ହେଲେ ବାହାର
ପାଗ ସୁଆର କି ସରଦାର କି ଜମାଦାର ଯେ
ଯେ ଯାହା ମୁରାତବ ସମ୍ଭାର          ଦୌଲତ ଧେନ ହେଲେ ହାଜର
ମଞ୍ଜୁର୍‌ କରି ହୁକୁମ ପାଇଛନ୍ତି ସଭ୍ୱର ଯେ
କେହୁ ଚଢ଼ିଛି ତାଜିବାଜି ଉପର ଯେ
ରଙ୍ଗ ଅଙ୍ଗା ଅଙ୍ଗକୁ ଦିଶେ ସୁନ୍ଦର ଯେ
ଢ଼ାଲକ ପୂରି ବାମ ହାଥରେ          ଭାଲ କଷିଛି ଦକ୍ଷିଣ କରେ
ଲାଲ ପଗଡ଼ି ଭଲ ମାନଛି ଶିରକୁ ତାର ଯେ । ୧ ।
କେ ଅଛି କଚ୍ଛି ବାଜିକ ଚଢ଼ି          ଧରି ନେଉଛି ଯୋଡ଼ିକ ଯୋଡ଼ି
ଇସାରା କଲେ ମଥାକ ଛୁଡ଼ି ଯିବ ସେ ଉଡ଼ି ଯେ
କେହୁ ତୁରୁକ ପିଠିରେ ବସି          ଢାଲ ବରଛି ଧରିଛି କଷି
କର୍ଣ୍ଣରେ ନଶ ଦେଇଛି ଖୋଷି ଲମ୍ବିଛି ଦାଢ଼ି ଯେ
କେହି ସୁଆର ହୋଇ ଇରାକି ପର ଯେ
ଯେତେ ସମ୍ଭାଳ ନେଲେ ନୋହେ ସେ ସ୍ଥିର ଯେ
ଫୁ ଫୁ ଶବଦ ମୁଖୁ ବାହାର          ବିଜୁଳି ପରି ଚରଣ କାର
ହୁଅନ୍ତେ ଚୁଚୁକାରି ପିଠିରେ ଠୁକୁଛି କର ଯେ । ୨ ।
ଚାଲି ଚଳାଇ ଚଳୁଛି କେହି          କାହା ଟାଙ୍ଗଣ ଯାଉଛି ବହି
କେ ଘୋଡ଼ୀ ଅଡ଼ ରହନ୍ତେ ଲେଡ଼ ଯୋଡ଼ ଲଗାଇ ଯେ
କେଉଁଠି ଚାଲେ ଦୁଇଗୋଡ଼ରେ          ସୁଆର ଖସି ପଡ଼ିବା ଡରେ
କଣ୍ଠକୁ ଭିଡ଼ିଧରି ଦୃଢ଼ରେ ସମ୍ଭାଳି ରହି ଯେ
କାହା ଘୋଡ଼ା ଘୋଡ଼ୀକି ଦେଖି ଆଗରେ ଯେ
ମତ୍ତେ ମିଶି ଆସନ୍ତେ ଅତି ବେଗରେ ଯେ
ବାଗ ହାତକୁ ଅଳପ ମୋଡ଼ି          ଆଡ଼େ ସଳଖି ଲଗାନ୍ତେ ଲେଡ଼ି
ପବନ ପରି ଗଲା ସେ ଉଡ଼ି ସେହି ଲଗରେ ଯେ । ୩ ।

କାହା ହ୍ରଂସାର ସ୍ୱନେ ସଂସାର        କମ୍ପି ଉଠୁଛି କେହୁ ହୁସାର
ପଶ ଛଟକେ କେ ବାଘ ଛାର ପଗ ଗତିରେ ଯେ
ଜଳ ଭଉଁରୀ ପରି କେ ଫେର        କେ ଘୋଡ଼ୀ ଅତି ପ୍ରଖରେ ଉଡ଼ି
ଯାଇ ଆସୁଛି ବାମ ଦକ୍ଷିଣ ଦୁଇ କଡରେ ଯେ ।
କେହୁ ନାଚୁଆ ପରି ହଶେ ଗତିରେ ଯେ
କାହା ଚରଣ ଅପ୍ସ ନୋହେ କ୍ଷିତିରେ ଯେ
କେ ବଙ୍କ ଆସେ ଗ୍ରୀବାକୁ ମୋଡ଼ି        ଡେଇଁ ଯାଉଛି ଯୋଡ଼ିକ ଯୋଡ଼ି
କେ ସ୍ରୋତ ନାବ ପରାଇ ଚୁଲେ ଖଣ୍ଡିରେ ଯେ । ୪ ।

ଅତ୍ୟନ୍ତ ମତ୍ତ ମାତଙ୍ଗକୁଳ        ଚଳନ୍ତି ଧୀରେ ହୋଇ ପ୍ରବଳ
କି ସେ ପ୍ରଚଳ ପର୍ବତମାଳ ମାନ ସଙ୍କୁଳ ଯେ
କିବା ଧରଣୀ ତରୁଣୀ ନୀଳ-        ଦୁକୂଳ ପିନ୍ଧି ହଶେ ମଞ୍ଜୁଳ
କି ସେ ଆକାଶୁ ଛିଡ଼ି ପଡ଼ୁଛି ଜଳଦ ଜାଳ ଯେ
ଏତେ ବେଳରେ ମଦଜଳ ବରଷେ ଯେ
ଏହି ରୂପେ ଆଭାସୁ ଅଛି ମାନସେ ଯେ
ପୁଣି କି ସିନ୍ଧୁ ମନ୍ଥିଲେ ଦେବେ        ସିନ୍ଧୁର କୁଳ ଜନମି ଏବେ
ଅସଂଖ୍ୟ ହୋଇ ଆସୁ ଅଛନ୍ତି ଅତି ହରଷେ ଯେ । ୫ ।

କଉଁ ହସ୍ତୀକି ମୋତି ଝାଲର        ମାନୁଛି କାହା କଣ୍ଠେ ସୁନ୍ଦର
ଘଣ୍ଟି ଘାଗୁଡ଼ି କାହାର ଥୋର ହସ୍ତ ବିଚଳ ଯେ
ପ୍ରବଳ ଭୃଙ୍ଗ ବେଢ଼ି ମାତଙ୍ଗ        ରଙ୍ଗ ସଜରେ ସାଜିଛି ଅଙ୍ଗ
ଚୂଳିକ ତାର ଗଙ୍ଗା ତରଙ୍ଗ ଯୋଖିବା ମାନେ ଯେ
କେଉଁ ଗଜରାଜର ବସନ୍ତ ସଜ ଯେ
ପଦ୍ମ ଭୂଷଣେ ଅତି ତୋରା କା ତେଜ ଯେ
ତାହାଙ୍କ ମତ ମତ୍ତରୁ କର        ବଳ୍ଗୁର ହୋଏ ନଷ୍ଟେ ବଇର
କୁଳ କମଳ ବନକୁ ଦଳି ଦେବେ ଏ ଆଜ ଯେ । ୬ ।

ଏହି ସମୟେ ଗଣକ ଯାଇଁ        ସାଏତ ଧରି କହିଲ ଏହି—
କ୍ଷଣି ପ୍ରାସ୍ଥାଣ କରିବା ବୀରବର କେଶରୀ ଯେ
ନେପାଳ ଦେଶ ଜାତ ସିନ୍ଧୁର        ଅମାରୀ କଷି କଲ ହାଜର
ତହିଁ ଆରୋହି ରାଜା ଟେମଣା ବାବୁ ବାହାରି ଯେ
ଚୂର ପାଶରେ ପାଗା ସୁଆରେ ଘେରି ଯେ
ନାମଖ୍ୟାତ ସିପାହୀମାନେ ବାହାରି ଯେ
ଲକବ ଚୋପଦାରେ ଡାକନ୍ତି        କହି ନୋହେ ସେ ଯଉଁ ସମ୍ପତ୍ତି
କି ଅବା ଛିଡ଼ି ପଡ଼ିଲା ସୁର ନଗର ଶିରୀ ଯେ । ୭ ।

ବରଷା କାଳ ନଦୀ ପରାଇ ବାଟେ ଅବାଟେ ଗଲେ ସେ ବହି
ଦଶ କୋଶରେ ରହିଲା ନାହିଁ ତରୁ ତୃଣ ହିଁ ଯେ
ଚଳନ୍ତେ ତାଙ୍କ ଚରଣ ଘାତେ ମହୀସମାନ ହେଲେ ପର୍ବତେ
ପିଇ ଯିବାରେ ଶୁଖିଲେ କେତେ ପୋଖରୀ ନଈ ଯେ
ପଥର ହିଁ ରହିଲା ନାହିଁ ପଥରେ ଯେ
କାହା ଧୃତି ରହିବ ଅବା ଏଥିରେ ଯେ
ଧୂମାନ୍ତ କର ମୁଲକ ଯାକ ଧନ କାଞ୍ଚନ ଲୁଟି ଅନେକ
ପଡ଼ିଲେ ଯାଇଁ ଷାଠିଏ ବାଟି ବଲ ଭିତରେ ଯେ । ୮ ।
ରାଜନମଣି ପୂର୍ବରୁ ଜାଣି ଅଗାଧ ପାଣି ଜଳୀ ନର୍ମାଣି
ପାଷାଣ କାନ୍ଥି ସଜାଡ଼ ପୁଣି ମୁରୁଚ୍ଛ କର ଯେ
ଭଣ୍ଡି ବାଜିବା ଥାନକୁ ହେଜ ଭଣ୍ଡ କାଙ୍ଗୋଲ ଅଛନ୍ତି ସାଜ
ଚଣ୍ଡୀ ପ୍ରସାଦ ଗୁଣ୍ଡକୁ ଝଞ୍ଜି ଛନ୍ତି ବଗୃର ଯେ
କାହିଁ ମୁଲକ ମଏଦାନ ତୋପକୁ ଯେ
ରୁପି ରଖି ଅଛନ୍ତି କୋଶେ ଧାପକୁ ଯେ
ଅଳପ ପାର କଉଁ ଗୁଣ୍ଡକୁ ରୁପି ଅଛନ୍ତି ଖାଲ ମୁଣ୍ଡକୁ
ମଉଡ଼ା ଟେକଛନ୍ତି କାହାର ଉଚମାପକୁ ଯେ । ୯ ।
କଉଁ ମୁରୁଚ୍ଛ ଭିତରେ ଘାଡ଼ ସଜାଡ଼ ନଳୀ ଧାଡ଼ିକ ଧାଡ଼
ରୁପି ଅଛନ୍ତି ଲଚ୍ଛିଲେ ଉଡ଼ିଯିବ କଉଡ଼ ଯେ
କାହିଁରେ ସିପା ଲଗାଇ ଭିଡ଼- ଛନ୍ତି ଦଲାଲ ଯୋଡ଼ିକ ଯୋଡ଼
ଅଧ କୋଶରେ ବାଜଲେ ଝଡ଼ ପଡ଼ିବ ଘୋଡ଼ୀ ଯେ
ରୁପା କାହିଁରେ ପେଠକଠା କମାଣ ଯେ
ଚାର ଫିଟିଲେ ଅଛୁ ଏହି ପ୍ରମାଣ ଯେ
କୋଶେ ସରକ କି ତରୁ ଦାରୁ କବା ପଥର କି ଅବା ମେରୁ
କକଣୀ ନରବାଜୀ ନକର ପୂର୍ବଏ ମାଣ ଯେ । ୧୦ ।

□□□

# ଦ୍ୱାରିବତୀ

ଯଦୁମଣି ମହାପାତ୍ର

ମଧୁପୁର ପଦ ଅନନ୍ତ ଶେଯେ । ପଦ୍ମା-କରର ମଣ୍ଡନତା ସର୍ଜ୍ଜେ ।
ହଂସ ମତରେ ଜାଣି ଏହି ମୂଳ । ତାର କବଳେ ବର୍ଜିଥାନ୍ତି କୁଳ ସେ
ମୀନ ଧ୍ୱଜ ରୂପେ ଶୋଭି ଯେ
ବିଯୋଗୀ ଯେ ଶୁକ ରଜାର ତାରଣେ ପ୍ରକାଶିତ କରେ ପ୍ରଭି ଯେ ।୧।

ଅଘାରି ଅଙ୍ଘ୍ରିକ ଅମ୍ବୁଜକର । ଛବି ବର୍ଣ୍ଣିବାର କବି ଗୁରୁର ।
ବିରଞ୍ଚି ଦର୍ପକାରି ସର୍ପ-ଈନ । ଚତୁର ପଞ୍ଚ ସହସ୍ର ବଦନରେ ।
କାହା କୀର୍ତ୍ତି ଗୁଣ ଗାଇ ଯେ ।
ଅଷ୍ଟ ପଦର ବିଂଶଶତ ନେତ୍ରକୁ ମୁଦନ୍ତି କାହାକୁ ଧ୍ୟାୟି ଯେ ।୨।

ବରଜ ବଧୂଙ୍କ ଉରଦ ବିଧୁ । ରଜ ଚନ୍ଦନେ ବନ୍ଦନେ କେ ସାଧୁ ।
ଧରି ଆକାଶ ରୁଚ ସଙ୍କୁଳେ । ଧରି ରହିଲେ କାହା ଗର୍ଭସ୍ଥଳେ ସେ
ସନକାଦି ପୂଜ୍ୟ ନନ୍ଦ ଯେ
ଜନକାର୍ଯ୍ୟରୁ କାହିଁରୁ ବିଜେକଲେ କନକାଦି ହ୍ରଦ ଭେଦି ଯେ ।୩।

ସଦ୍ମ କରିବାରୁ ଅର୍ଦ୍ଧ ଚନ୍ଦ୍ରମା । ଛଦ୍ମ କରିଛନ୍ତି ପଦ୍ମ ମହିମା
ଗରୁଡ଼ ମତାଗୂର୍ଯ୍ୟଙ୍କ ମାଧୁର୍ଯ୍ୟ । ରସତରଙ୍ଗରେ ତାହାଙ୍କ ତେଜ ସେ
ଭସାଇ ନେବାରୁ ଯେନ ଯେ
ଫନ୍ଦା କରି ଧରି ରହିଛନ୍ତି ଗିରି ଗୋବର୍ଦ୍ଧନ ବୃନ୍ଦାବନ ଯେ ।୪।

ଏମନ୍ତ ଗୁରୁ ଗୀର୍ବାଣଙ୍କ ଗୀରୁ । କୃଷ୍ଣ ବର୍ଣ୍ଣ ମୋର କର୍ଣ୍ଣେ ସଞ୍ଚରୁ
ସେତ ସୁଧାରସ ଆମୋଦଦାୟୀ । ହୃଦୟରେ ପରିପୂରଣ ହୋଇ ସେ
ମୁଖ ହେଲା ଉଚ୍ଛଳିତ ଯେ
ଦ୍ୱିବିଧ ପୂର୍ଣ୍ଣଚନ୍ଦ୍ର ସିଦ୍ଧି ନିବନ୍ଧେ ପ୍ରବନ୍ଧ ହୋଇଲା ଖ୍ୟାତ ଯେ ।୫।

ଜାତବେଦେ ଭୂତିବନ୍ତ ସୁବର୍ଣ୍ଣ । ଗ୍ରନ୍ଥମୁଖେ ହୋଇଅଛି ଉତ୍ପନ୍ନ ।
ଶଙ୍କର ମୁକୁଟେ ଅର୍ଜ୍ଜୁନ ପ୍ରଭା । ବିହରି ପବରେ ପ୍ରକାଶେ ବିଭା ଯେ
ଏହି ଚରିତେ ଏ ଗ୍ରନ୍ଥ ଯେ
ଗ୍ରନ୍ଥନ ହେବାରୁ ଗ୍ରାନ୍ଥିକ ବିହିଲା ପୂର୍ଣ୍ଣଚନ୍ଦ୍ର ପୁରୁଷାର୍ଥ ଯେ ।୬।

ଶୂଦ୍ର ମୂର୍ଖ ଏ ହୋଇଛନ୍ତି ବାହାର । ରୌଦ୍ରତା ବହ୍ନି କେହ୍ନି ନ ବସ୍ତୁର ।
ବଧୂ ବଧନ୍ତୁଦ ଉଚ୍ଚିଷ୍ଟ ଜଣା । ଶିବେ ବାଜେ ଚନ୍ଦ୍ରଚୂଡ଼ ବାଜଣା ସେ
ପଦ୍ମାପତିଙ୍କର ପଦ ଯେ
ସମ୍ଭବ ସମ୍ପଦ ପଦାର୍ଥରେ ବ୍ୟର୍ଥ ମଣ୍ଡିବାର ଅପବାଦ ଯେ । ୭ ।

ସୁମନ୍ତ ଦେଇ ବସ୍ତୁର ସୁମନ୍ତ । ଅମ୍ଭୁଧି ମଧ୍ୟବର୍ତ୍ତୀ ଦ୍ୱାରବଣ୍ଣ ।
ପୁରର ଆଶ୍ଚର୍ଯ୍ୟ କଳ୍ପନା ଶିଳ୍ପ । ସଙ୍କଳ୍ପ କର୍ତ୍ତାର ପ୍ରଶଂସାକଳ୍ପ ଯେ ।
ବସିକର କଳ୍ପ କଳ୍ପ ଯେ,
ରମା-କାମକଳ୍ପ-ପାଦପଙ୍କତଳ୍ପ ପ୍ରକଳ୍ପନେ ହେବ ଅଳ୍ପ ଯେ । ୮ ।

ଶତକୋଟିକ ଶତ କୋଟି ଗୁଣେ । ବଳ ବଳସ୍ଥ ହୋଇବା ପାଷାଣେ ।
ଘଟଣା ହୋଇଛି ଦୁର୍ଗ ପ୍ରାକାର । ରୁଚିତର ସୂଚକମ ନକର ସେ ।
ତା କପାଟ ପାତ ଧ୍ୱନ ଯେ,
ବଳସୁଁ କୈଳାସେ ମଯୂର ବଳାସେ ଭଜନ୍ତ ଭୟ ସେନାମ୍ନି ଯେ । ୯ ।

ଏମନ୍ତ ଝୋଟର ଗୁମଟ ଦ୍ୱାର । ଯାର ଅହୋରାତ୍ର ପହରୀ ତାର ।
ଦ୍ଧୃଶ ପୁଣ୍ଡରୀକ କୁମୁଦ ପର । କୃଶ ପୁଣ୍ଡରୀକ କୁମୁଦ କର ଯେ,
ହେବେ ତା ଗୃପଡ଼ା ମାଡ଼େ ଯେ ।
ଦେବତାଙ୍କ ଆୟୁଧରେଁ ଧୂଳି କର ଦେବତା ଆୟୁଧ ଏଡ଼େ ଯେ । ୧୦ ।

ଶକଟ ପ୍ରାତ ବନୀ ସେ କଟକେ । ନପ୍ରକଟନ୍ତି ଅରିଦର ଡାକେ ।
ମନ୍ଦ ସଂସର୍ଗତା ଚନ୍ଦନ ବାତେ । କଳ ଜନ୍ମାନ୍ତ ପୁଷ୍ପଲତା ବ୍ରାତେ ସେ,
ଉଦ୍‌ବେଗ ମାନ୍ଦକ ପୂଗେ ଯେ
ଉପବାସେ ସଦା ରହିଛନ୍ତି ଏକା କେବଳ ବଜାସ୍ତ୍ରି ବର୍ଗେ ଯେ । ୧୧ ।

ପଦ୍ମ ପଦ୍ମ ଯହିଁ ଅଛଦ୍ମ ଗୀର । ପଦ୍ମ ସଦ୍ମ ଭାଙ୍ଗିଦେଲା ପଦ୍ମାର
ଏଣୁ ପରମାନନ୍ଦେ ସାତବାର । ନୃତ୍ୟନ୍ତ ପ୍ରତିପୁରେ ସାତବାର ସେ ।
ବନାଶରେ ନାହିଁ ଦର ସେ,
କୀନାଶ ପୁରୁ ଗୁରୁପୁନ ଆଣିବା ବ୍ୟକ୍ତ ବରଚବା ପୁର ଯେ । ୧୨ ।

ମହା ଉପକାସ୍ତି ରୈବତ ନଗ । ବାହାରଛନ୍ତି ବହ୍ନି ବହ୍ଲିକ ଆଗ ।
ଆପେ ଆପଣାର କଜଣେ ଲୁଚିଛି । ତା ଶୀତ ତାପ ତାସିତକୁ ଇଚ୍ଛି ସେ,
ଏ ପରମ ସାଧୁ ମିତ ଯେ,
ଭଣ୍ଡି ଅଖଣ୍ଡିତ ପ୍ରୀତ ହୋଇଛନ୍ତି ରୁଣ୍ଡୀଭୂତ ହୋଇ ଯତ ଯେ । ୧୩ ।

ମାତଙ୍ଗ କୁମ୍ଭ ଅଗସ୍ତି ସଂସର୍ଗୀ । ଭୃଗୁ କପିଳ ମରୀଚ ସର୍ଗୀ ।
ସାଣ୍ଡିଲ୍ୟ କଉଶିକ ଡାକେ ବ୍ୟାସ । ଭରଦ୍ୱାଜ ଶୁକ ହାରିତ ବଂଶ ସେ
ବରିହ ରୋମାଞ୍ଚ ସଙ୍ଗ ଯେ
ରାମ ଶତାନନ୍ଦ ପର୍ବତ ବନ୍ଦିତ ଜନକ ସଞ୍ଚାର ଭଙ୍ଗ ଯେ ।୧୪।
ଚିତ୍ରଗୁପ୍ତେ ଲେଖିବାରେ ଗ୍ଲାବେଶ । ମନୁ ଜନ୍ମାଇ ଅତନୁ ଆବେଶ ।
ଗୃପି ଅଧରକୁ ବନ୍ଧଇ ପୀଡ଼ା । ଶମନ ଦୁଃଖ ସମ କାମକ୍ରୀଡ଼ା ସେ,
ବଗୃର ଭ୍ରମନ୍ତି ଜ୍ଞାନୀ ଯେ
ନିରଞ୍ଜନାଞ୍ଜନେ ନେତ୍ରକୁ ରଞ୍ଜନ କରି ବସିଛନ୍ତି ଧ୍ୟାନୀ ଯେ ।୧୫।

□□□

## ଭକ୍ତି ଓ ଜ୍ଞାନ ତତ୍ତ୍ୱ

**ଭକ୍ତଚରଣ ଦାସ**

ଉଦ୍ଧବ ବଚନ ଶୁଣି ବୋଲନ୍ତି ଗୋପ ରମଣୀ, ଏ ଯେଉଁ ଜ୍ଞାନକୁ ବୁଝାଇଲ ।
କ୍ଷୀର ଭାଣ୍ଡେ ଦଧି ଦେଲେ, ନାଶଯାଇ ସେହୁ ଭଲେ, ଜ୍ଞାନକଥା କିପାଁଇ କହିଲ ।
ହେ ହରିଦୂତ,
ଆମ୍ଭର ଭଗତି ରତ୍ନାକର । ଜ୍ଞାନନଦୀ ତହିଁ ସମ କର ହେ ।୧।
ଅଭାଗ୍ୟ ହୋଇଲୁ ଯେଣୁ, ଏ କଥା ଶୁଣିଲୁ ତେଣୁ, ଆମ୍ଭ ଆଗେ ସେମାନ ନକହ
ବ୍ରହ୍ମଙ୍କୁ ଭାବନ୍ତି ଯେହୁ, ଏ ଭାବ ଜାଣନ୍ତି ସେହୁ, ଆମ୍ଭେ ତ ନଜାଣୁ ତୁମ୍ଭ ଭାବ ।
ହେ ହରିଦୂତ,
ଯେସନେ କପିତ୍ଥ ଗଜ ଖାଇ । ପୁଣି ତାହା ବାହାର କରଇ ହେ ।୨।
ଦେଖିଲେ ହଣେ ସୁନ୍ଦର, ନଥାଇ କିଛି ଉଦର, ସେହି ରୂପେ ରସହୀନ ଜ୍ଞାନ ।
ସେ କଥାକୁ କେତେ ଭଣ, ଏ ତନୁ ଆନ ନଜାଣ, ହରି ସଙ୍ଗେ କରକାକୁ ଗଣ ।
ହେ ହରିଦୂତ,
ସେ ପୁଣି କ୍ଷଣକ ମାହେ ସଢ଼େ । ରୂପରେଖ ଯାଏ କେଉଁ ଆଡ଼େ ହେ ।୩।

ତେମନ୍ତ ମୁକୁନ୍ଦ ସ୍ମର, ପ୍ରେମ ବନେ ବନ ହର, ଭଗନ୍ତ ପଛରେ ଭ୍ରମୁଥାଇ ।
ଦାସରୁ ଅନନ୍ତ ସ୍ଥାନ, ସେ ଗୁଡ଼ାକ କେତେ ଘେନ, ଆମ୍ଭଙ୍କୁ ସେମାନ ନରୁଚଇ ।
ହେ ହରଦୂତ,

ଯେଉଁ ଜନ ସୁଧା ଖାଇଥାଇ । ସେ ନିକ ମହୁଲ ପାଶେ ଯାଇଁ ହେ ।୪।
ଚିନ୍ତାମଣି କଣ୍ଠେ ଯାର, ସଦା କରଥାଇ ହାର, ସେ ନିକ ଲେଖଇ ଆନ ରତ୍ନ ।
ଜାତିପୁଷ୍ପ ଯେ ଘେନଇ, ସେ ନିକ ବାସଙ୍ଗ ସ୍ପର୍ଶି, ସେହି ରୂପ ତୁମ୍ଭ ବ୍ରହ୍ମଜ୍ଞାନ ।
ହେ ହରଦୂତ,

ସେମାନ ନକହ ଆମ୍ଭ ଆଗେ । ମଥୁରା ବାହୁଡ଼ି ଯାଅ ବେଗେ ହେ ।୫।
ଆମ୍ଭ ବୋଲ କର ଏବେ, ବନ ବଞ୍ଚ ଭକ୍ତିଭାବେ, ନାମରୂପ ବୟସ ଭୂଷଣ ।
ନାନା ରଙ୍ଗେ ସେବା କର, ଗାଢ଼ ଲୋଭ ହୃଦେ ଧର, ଦମ୍ଭ ଲଜ୍ଜା ଜାତି ଦାର ଧନ ।
ହେ ହରଦୂତ,

ଏମାନ ତେଜିଲେ ପାଇ ପ୍ରେମ । ବ୍ରହ୍ମଜ୍ଞାନେ ବ୍ୟର୍ଥେ ନଭ୍ରମ ହେ ।୬।
ତଥାପି ମଧୁର ରସେ, ଜ୍ଞାନ ଯେବେ ଅଳ୍ପ ମିଶେ, ତାକୁ ସେ କରଇ ବେଗ ନାଶ ।
ପତିବ୍ରତା ନାରୀ ଯେହ୍ନେ, ପରପୁରୁଷର ସନେ, ସଂଯୋଗ ହୋଇଲେ ହୋଏ ଭ୍ରଂଶ ।
ହେ ହରଦୂତ,

ସେହ୍ନ ମତେ ଭକ୍ତିରସେ ଜ୍ଞାନ । ଆମ୍ଭମାନେ ନଜାଣୁ ସେମାନ ହେ ।୭।
ଜାଣୁ ଯାହା ଶୁଣ ତାହା, ତୁମ୍ଭେ ଯେ ପବନଦେହା, ତେଣୁକରି କହିବା ସେ କଥା ।
ଅନ୍ୟଜନ ହେଲେ ତାକୁ, ନ କହନ୍ତୁ ଭଜୁଁ ଯାକୁ, ସେ ତ ଆତ୍ମା ସଂପୂଟର କଥା ।
ହେ ହରଦୂତ,

ବ୍ରହ୍ମଜ୍ଞାନୀ ନଜାଣନ୍ତି ତାହା । ଶୁଷ୍କ ଦାରୁ ପ୍ରାୟେ ତାଙ୍କ ହିୟା ହେ ।୮।
ସେହି ରୂପେ ତୁମ୍ଭ ମନ, ଜାଣିଲୁ ଶୁଣି ବଚନ, ବ୍ରହ୍ମ ବୋଲି କହିଲ ବେଳରୁ ।
ସଚ୍ଚିଦାନନ୍ଦ ଅଙ୍ଗରୁ, ସର୍ବବ୍ରହ୍ମ ସେହିଠାରୁ, ତାଙ୍କ ବିନେ କିଛି ନ ପଶ୍ଚରୁ ।
ହେ ହରଦୂତ,

ସେହୁ ବ୍ରହ୍ମଙ୍କୁ ନଜାଣୁ ଆମ୍ଭେ । ତାଙ୍କ ଭାବ କଥା ଜାଣ ତୁମ୍ଭେ ହେ ।୯।
କାଳନ୍ଦୀ ହ୍ରଦରେ ପଶି, ଯେହୁ କାଳୀଦର୍ପ ଧ୍ୱଂସି, ଯେ ଭାଞ୍ଜିଲେ ଶକଟା ଅର୍ଜୁନ
ପୂତନା ପରାଣ ଶୋଷି, ଷଣ୍ଢା ବକା ଅଘା ନାଶି, ସେ ନାଗର ଆମ୍ଭ ମୂଳ ବ୍ରହ୍ମ ।
ହେ ହରଦୂତ,

ଆନ ବ୍ରହ୍ମେ ନରୁଚଇ ମନ । ତୁମ୍ଭେ କିମ୍ପା କହୁଛ ଏସନ ହେ ।୧୦।

ଯେ ଗିଳିଲ ଦାବାନଳ, ରଖିଲ ବରଜକୁଳ, ଇନ୍ଦ୍ର ଛଳେ ଟେକି ଗୋବର୍ଦ୍ଧନ ।
ଆମ୍ଭ ବ୍ରହ୍ମ ସେହି ଜାଣୁଁ, ଆନ ବ୍ରହ୍ମକୁ ନଗଣୁଁ, ନିତ୍ୟେ ଭଜୁଁ ତାହାଙ୍କ ଚରଣ ।
ହେ ହରିଦୂତ,
ସ୍ୱରୂପ କହିଲୁଁ ତୁମ୍ଭ ଆଗେ । କେବେହେଁ ନ ପଶୁଁ ବ୍ରହ୍ମଯାଗେ ହେ ।୧୧।
ତୁମ୍ଭେ ଯେ ବୋଇଲ ସବ, ହୃଦରେ ବ୍ରହ୍ମର ଠାବ, ତେବେ ଆଉ ଭଜୁଛ କାହାକୁ ।
ତୁମ୍ଭର ଶରୀରେ ଅଛି, ଖେଳଇ ପରମ ପକ୍ଷୀ, କେହୁ ପୁଣ ପେଶିଛି ତୁମ୍ଭଙ୍କୁ ।
ହେ ହରିଦୂତ,
କାହା ବୋଲେ ଗୋପକୁ ଅଇଲ । କାହା ଆଜ୍ଞା ଆମ୍ଭଙ୍କୁ କହିଲ ହେ ।୧୨।
ଉଦ୍ଧବ ବୋଲନ୍ତି ଶୁଣି, ପେଷିଛନ୍ତି ବେଣୁପାଣି, ତୁମ୍ଭଙ୍କୁ ପ୍ରବୋଧି ଯିବା ପାଇଁ ।
ଶୁଣି ହସିଲେ ଗୋପିନୀ, ଏବେ ସେ ପାରିଲୁଁ ଜାଣି, ଆମ୍ଭ ବ୍ରହ୍ମ ସବୁର ଗୋସାଇଁ,
ହେ ହରିଦୂତ,
ତୁମ୍ଭ ବ୍ରହ୍ମ କୃଷ୍ଣ ବୋଲେ ଛନ୍ତି । ଆଜ୍ଞା ପାଇ ସମସ୍ତ କରନ୍ତି ହେ ।୧୩।

□□□

## କାଳସର୍ପ ଆପଣ

**କବିସୂର୍ଯ୍ୟ ବଳଦେବ ରଥ**

ବାଧିଲା ଜାଣି କ୍ଷମା କର ନୋହିଲେ ରମା
ରମଣ ଦଣ୍ଡେ ହିଅ ଟାଳ
ତୁମ୍ଭଙ୍କୁ ଜଗନ୍ନାଥ ଆଜ ମୋ ମନୋରଥ
ଭରତି କରି ଦେବ ଗାଳି ହେ,
କୃପାନିଧି !
କରୁଣାସିନ୍ଧୁ ବୋଲି କରି, କହନ୍ତି ବୁଦ୍ଧେ ଉରମରି
କାଳସର୍ପ ଆପଣ କବଳ କରି ପ୍ରାଣ-
ପବନମାନଙ୍କୁ ସବୁରି ହେ ।
କୃପାନିଧି ! ୧ ।

ଜଳଧି ଅନ୍ତେ ନଜ ଘର ଦେବାଧିରାଜ,
ବୁଡ଼ାଇ ଦେଇଛ ଆପଣ
ତୁମ୍ଭର ସିନା ଯେଜ ଆଶ୍ଚର୍ଯ୍ୟ ନୁହେଁ ଆନ
ଜନର ଘରବୁଡ଼ା ପଣ ହେ ।
କୃପାନିଧି !

ଭୁଜଙ୍ଗ ସାମ୍ୟ ଆମ୍ଭ ତୁଲେ ବତାଅ ବୋଲି ଆଜ୍ଞା ହେଲେ
ମୁଁ ନୁହେଁ ଘରବୁଡ଼ା ବତାଇବାକୁ ଛିଡ଼ା
ହୋଇଛୁ ବତାଇବ ଭଲେ ହେ,
କୃପାନିଧି ! ୨ ।

ତାହାକୁ ବୋଲି ଚକ୍ରୀ ଚକ୍ର ଥିବାରୁ ଚକ୍ରୀ,
ତୁମ୍ଭେ ତ ବୋଲାଅ ମଣ୍ଡଳେ,
ବୋଲାଇ କୁଣ୍ଡଳୀ ସେ, ଆପଣ ତ ବିଶେଷେ
ଭୂଷିତ ମକରକୁଣ୍ଡଳେ ହେ ।
କୃପାନିଧି !

ଅଦୃଶ୍ୟ ହେବାରୁ ତା ପାଦ, ତାହାକୁ ବୋଲି ଗୂଢ଼ପଦ
ଆପଣା ଚରଣ ତ ବରଞ୍ଚିକୁ ଗୁପତ
କାହିଁ ତାଠାରୁ ତୁମ୍ଭ ଭେଦ ହେ,
କୃପାନିଧି ! ୩ ।

ହେବ ବା ଅବଧାନେ ତାହାକୁ ତ୍ରିଭୁବନେ,
ବୋଲନ୍ତି କାକୋଦର ନରେ,
ଏ ତ୍ରିପିଷ୍ଟପଯାକ ମଧ୍ୟେ ଗୋଟିଏ କାକ,
ନାହିଁ କ ତୁମ୍ଭର ଉଦରେ ହେ ।
କୃପାନିଧି !

ବିବରେ ସେ ଅଛି ଲମ୍ପଟ ବିବର ବିହଙ୍ଗମ ଗ୍ରଠ
ବିଧିରେ ସେ ଲମ୍ପଟ, ଆପଣ ସେ ତ ପଟ
ପଟଳେ ହୋଇଅଛ ସ୍ଫୁଟ ହେ ।
ମହାପ୍ରଭୁ ! ୪ ।

କାନ ନଥାଇ ଆଖି ଭୁଜଙ୍ଗଠାରେ ଦେଖି
ନୟନଶ୍ରବା ବୋଲି ତାକୁ,
କହ କମଳାନନ କାହିଁ ତୁମ୍ଭ କାନ
ସର୍ପ ବୋଇଲେ ଚଳିବାକୁ ହେ ।
କୃପାନିଧି !
ଫଣୀ କାଯ୍ୟାକୁ ବୋଲି ଭୋଗ, ଥିବାରୁ ସେ ଦୁଇ ସଂଯୋଗ
ତାହାକୁ ବୋଲି ଭୋଗୀ ତୁମ୍ଭେ କି ନୁହଁ ଭୋଗୀ
କରୁ ଯା ଅଛ ମହା ଭୋଗ ହେ
କୃପାନିଧି ! ୫ ।
ଯେବେ ଭୁଜଙ୍ଗ ନୁହଁ କାଳୀୟଠାରେ ଦ୍ରୋହ
କଲ କାହିଁକି ଏତେ କରି,
କେତେ ନଥିଲେ ଗୋପେ ତୁମ୍ଭେ କାହିଁକି କୋପେ
ତାହାକୁ ଦେଲ ପ୍ରାଣେ ମାରି ହେ ।
କୃପାନିଧି !
ତାହାର ନାମେ ତୁମ୍ଭ ନାମ ଅଦ୍ୟାପି ହୋଇଛି ଜନମ
ଯେବେ ସ୍ୱଗୋତ୍ର-ଦ୍ରୋହ ନଥାନ୍ତା ନାଥ କହ
କପାଇଁ ହୁଅନ୍ତା ଏ କ୍ରମ ହେ
ମହାପ୍ରଭୁ ! ୬ ।

□□□

# ଆହେ ପ୍ରଭୁ କଳାଶ୍ରୀମୁଖ

ବନମାଳୀ ଦାସ

ଆହେ ପ୍ରଭୁ କଳାଶ୍ରୀମୁଖ !
କାଳଯାକ ଭଜି ନଗଲା ଦୁଃଖ । (ଘୋଷା)

କି ଅବା ଛାମୁରେ ଜଣାଇବି ମୁହିଁ
ସାକ୍ଷାତେ ମୋ ହୀନ ଅବସ୍ଥା ଦେଖ ।
ତେଣୁ ଶ୍ରୀଛାମୁକୁ ଯାଇ ନପାରଇ
ଖଣ୍ଡିଏ ତ ମୋର ନଥାଇ ଭେକ ।୧।

ସାହୁଙ୍କ ଜଞ୍ଜାଳ କୁଟୁମ୍ବଙ୍କ ଗୋଳ
ଅନ୍ତର ବେଦନା ସବୁ ଅଧିକ ।
କା ଆଗେ କହିବି କେ କଷ୍ଟ ଫେଡ଼ିବ
ସଂସାରେ ମୋ ପରି ନାହିଁ ନିରେଖ ।୨।

ମନ ମଧ୍ୟେ ମୋର ହରଷ ନଥାଇ
ହୃଦୟ ମଧ୍ୟରେ ସଦା ବିମୁଖ ।
ଚତୁର୍ବର୍ଗଦାତା ଆଶ୍ରେ କରି ମୁଁ ଯେ
କାହିଁରେ ଆଉ ନ ପାଇଲି ସୁଖ ।୩।

ବାତଚଣ୍ଡ ପ୍ରାୟେ ମନ ଭ୍ରମୁଥାଇ
ଦଣ୍ଡେ ନ ରହଇ ତୁମ୍ଭର ପାଖ ।
କହେ ବନମାଳୀ ଶଙ୍କରେ ପୂରଇ
ଚଣ୍ଡ ଉଦାହରଣ ଘୋଡ଼ାଇ ରଖ ।୪।

□□□

# ଜଗବନ୍ଧୁ ହେ, କିଛି ମାଗୁନାହିଁ ତୋତେ

ବନମାଳୀ ଦାସ

ଜଗବନ୍ଧୁ ହେ, କିଛି ମାଗୁନାହିଁ ମୁଁ ତୋତେ
ଧନ ମାଗୁନାହିଁ ଜନ ମାଗୁନାହିଁ
ମାଗୁଛି ଶରଧା-ବାଲିରୁ ହାତେ (ଘୋଷା)

ଆନ ଦରଶନ ନଲୋଡ଼େ ନୟନ ଏକା ତୁମ୍ଭ ଦେଖା ବିନା ।
ଶୁଣିବାକୁ କାନ ନଇଚ୍ଛଇ ଆନ, ତୁମ୍ଭ ଚରିତେ କାମନା ।୧।

ଜିହ୍ୱା ନ ବାଞ୍ଛଇ ଗ୍ରାମ୍ୟ ଗୀତ ଗାଇବାକୁ ରଜନୀ ଦିବସ ।
ତୁମ୍ଭ ନାମାବଳୀ କେବଳ ସଙ୍ଗୀତ ହୋଇଥାଉ ପୀତବାସ ।୨।

ନାସା ମୋର ତୃପ୍ତ ନ ଲଭଇ ଆନ ସୁବାସ ଦ୍ରବ୍ୟ ଆଘ୍ରାଣେ ।
ତବ ଚୂଡ଼ା-ମାଳ ତୁଳସୀ କୁସୁମ ଚନ୍ଦନ କର୍ପୂର ଧ୍ୟାନେ ।୩।

ମୋ ହସ୍ତ ଅଙ୍ଗୁଳି ସିମ ବନମାଳୀ ହରେ କୃଷ୍ଣ ଜପୁଥାଉ ।
ବୋଲେ ବନମାଳୀ ମୋ ବେନି ଚରଣ ତୋ ତୀର୍ଥ ଭ୍ରମଣେ ଧାଉଁ ।୪।

□□□

# ଉଠିଲୁ ଏଡ଼େ ବେଗି କାହିଁକିରେ

**ଗୋପାଳକୃଷ୍ଣ ପଟ୍ଟନାୟକ**

ଉଠିଲୁ ଏଡ଼େ ବେଗି      କାହିଁକିରେ ଦୁଃଖିଧନ
    ଦଧି ମନ୍ଥାଇ ଦେବୁ ନାହିଁକି ରେ । ପଦ ।
ଦେହ ପାଶୋରି ଦଣ୍ଡେ      ନିଦ ନ ଗଲୁ ଖଣ୍ଡେ
    ବଠୋଳ ହେଲୁ ମୋର ପାଇଁକି ରେ ।୧।
ଖେଳିବୁ ରାମ ଭୁଲେ      ପଛେ ରାତି ପାହିଲେ
    ଶୁଆଇ ଦେବ ଗୀତ ଗାଇକି ରେ ।୨।
ମନ୍ଥିବି ମୁଁ କେମନ୍ତ      ଖୁଆଦଣ୍ଡରୁ ହାତ
    ଛାଡ଼, ଦେଉଛି ସର ଖୋଇକି ରେ ।୩।
ଆହା ଏକ ପ୍ରମାଦ      ଛନ୍ଦନା ବାବୁ ପାଦ,
    ଡାକଯା ବଳରାମ ଭାଇକି ରେ ।୪।
ମଥନ ଘଟେ ହାତ      ପୂରାଇ ନବନୀତ
    କାଢ଼ୁ ବୋଲନ୍ତି ହେଲୁ ବାଇକିରେ ।୫।
ଭୁଞ୍ଜା ହାତଠା ଖାଇ      ନାଚୁଛୁ କାହିଁ ପାଇଁ
    ଶିଖିଯିବୁ ନଚୁହାଁ ଛୁଇକିରେ ।୬।
ଗୃହ କୃତ୍ୟ ପକାଇ      ବସିଥିବ ଏକାଇ
    ନଣି ଧନ ତୋତେ କାଖେଇକିରେ ।୭।
ପଣତରେ ବଦନ      ପୋଛି ଦେଲେ ଚୁମ୍ବନ
    ଗୋପାଳକୃଷ୍ଣ ଚିତ୍ତେ ଦୁହିଁକିରେ ।୮।

□□□

# ଆହେ ନୀଳ-ଶଇଳ

**ସାଲବେଗ**

ଆହେ ନୀଳ ଶଇଳ ପ୍ରବଳ ମତ୍ତ ବାରଣ,
ମୋ ଆରତ-ନଳିନୀ-ବନକୁ କର ଦଳନ । ଘୋଷା ।

ଗଜରାଜ ଚିନ୍ତା କଲା ଥାଇ ଘୋର ଜଳେଣ
ଚକ୍ର ପେଷି ଗ୍ରାହ ନାଶି ଉଦ୍ଧରିଲ ଆପଣ । ୧ ।

ଘୋରବନେ ମୃଗୁଣୀକି ପଡ଼ିଥିଲା କଷଣ
କେଡ଼େ ବଡ଼ ବିପତ୍ତିରୁ କରିଅଛ ତାରଣ । ୨ ।

କୁରୁସଭା ତଳେ ଶୁଣି ଦ୍ରୌପଦୀର ଜଣାଣ
କୋଟି ବସ୍ତ୍ର ଦେଇ ହେଲେ ଲଜ୍ଜା କଲ ବାରଣ । ୩ ।

ରାବଣର ଭାଇ ବିଭୀଷଣ ଗଲା ଶରଣ
ଶରଣ ସମ୍ଭାଳି ତାଙ୍କୁ ଲଙ୍କେ କଲ ରାଜନ । ୪ ।

ପ୍ରହ୍ଲାଦ ପିତା ସେ ଯେ ବଡ଼ ଦୁଷ୍ଟ ଦାରୁଣ
ସ୍ତମ୍ଭରୁ ବାହାରି ତାଙ୍କୁ ବିଦାରିଲ ତକ୍ଷଣ । ୫ ।

କହେ ସାଲବେଗ ହୀନ ଜାତିରେ ମୁଁ ଯବନ
ଶ୍ରୀରଙ୍ଗାଚରଣ ତଳେ କରୁଅଛି ଜଣାଣ । ୬ ।

□□□

# ମୋ ଜୀବନ ପଛେ ନର୍କେ ପଡ଼ିଥାଉ

**ଭୀମ ଭୋଇ**

ବଖାଣି ମହିମା ଧୂନିକୁ ସ୍ଥାପିବା ଶ୍ରୀମୁଖରେ ଆଜ୍ଞା ଦେଲେ,
ଦାସପଣେ କିଣି ଅଧବାଟେ ଆଣି କିମ୍ପା ଏତେ ସବୁ କଲେ । ୧ ।
ନାହିଁ ମୋ ଭରସା ଉଡ଼ୁଛି ସାହସା କି ବୁଦ୍ଧି କରିବି କହ,
ଜଗତ ସମ୍ଭାଳି ଜଗତକୁ ପାଳି ତୁମ୍ଭ ଭାର ତୁମ୍ଭେ ବହ । ୨ ।
ଭଗତଙ୍କ ଦୁଃଖ ନିରନ୍ତର ଦେଖି ଲାଗିଲିଣି ପାଦାରବିନ୍ଦେ,
ବାନ୍ଧିଥା ଯୋଗାଇ ଆଗପଛ କରି ବହିଥାଅ ନିଜ କାନ୍ଧେ । ୩ ।
ସମ୍ପତ୍ତି, ବିପତ୍ତି, ମୁକତି ଦୁର୍ଗତି ଭିଆଣ କରିଛ ଯୋଡ଼ି,
ପାପ ଦୁଃଖ ଭାର କେ ତୁମ୍ଭ ବୋହିବ ପାଦତଳେ ଥାଉ ପଡ଼ି । ୪ ।
ବଜେ କରିଅଛ କିମ୍ପା ନ ବୁଝୁଛ ପଳାଇ ପଶିବି କାହିଁ,
ଅର୍ଜି ପାପଭାର କରିବି ପସାର ପାଦ ତଳେ ଦେବି ଥୋଇ । ୫ ।
ଶରଣ ବାଞ୍ଛିତ କାନ୍ଦି କାନ୍ଦି ଭକ୍ତ ଗଡ଼ିଗଲେଣି ସକଳ,
ଦୋଷ ଅପରାଧ କ୍ଷମା କରି ଗୁରୁ ଜାଗ୍ରତରେ ପ୍ରତିପାଳ । ୬ ।
ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖୁ ଦେଖୁ କେବା ସହୁ,
ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ । ୭ ।
ଜଣାଉଛି ମୁଁ ଯେ ଭକ୍ତ ଭାବ ରଙ୍ଗେ ଆହେ ଅଣିମା ଅନନ୍ତ,
ତିନି ବ୍ରହ୍ମାଣ୍ଡରେ ଯେତେ ଜୀବ ଛନ୍ତି ସମସ୍ତେ ତୁମ୍ଭ ଭଗତ । ୮ ।
ଏକ ଖଣ୍ଡ ହାଡ ବୁନ୍ଦାଏ ରୁଧିର ପୁଟେ ମାଉଁସ ଜାଣଇ
ତେଣୁ କରି ସିନା ପ୍ରାଣୀଙ୍କ ବିକଳ ସହି ନ ପାରିବି ମୁହିଁ । ୯ ।
ଏକା ଖଡ଼ଗରେ ଦଶପାଞ୍ଚ ମୁଣ୍ଡ ଛିଡ଼ଇ ଭାରତ ଯୁଦ୍ଧେ,
ଆରେକ ଅଙ୍ଗକୁ ପାଦେ ପ୍ରହାରିଲେ ଏ ଅଙ୍ଗକୁ ମୋର ବାଧେ ।୧୦।
ଆତ୍ମା ଭଗତରେ ଦୋଷାଦୋଷ ହେଲେ ବଜ୍ର ପଡୁ ମୋ ମୁଣ୍ଡକୁ
କହେ ଭୀମ ଭୋଇ ବ୍ରହ୍ମ ଶାପ ଦେଇ ଜାଳିଦିଅ ମୋ ପିଣ୍ଡକୁ ।୧୧।

# ଅତୀତର ତୁଙ୍ଗ ସାକ୍ଷୀ ପୁରାତନ (ଚିଲିକା)

**କବିବର ରାଧାନାଥ ରାୟ**

ଆହା ଏ ଶୋଭାର କାହିଁ ପଟାନ୍ତର ?
ଥିଲେ ଥିବ ସ୍ୱର୍ଗେ, ମର୍ତ୍ତ୍ୟେ ଅଗୋଚର ।
ଯା ଶୋଭାବ ଦେଖି କହ କେହୁ ଜନ
ଏ ଶୋକ-ଯାଶୋଭା ଅପ୍‌ସରା ଭୁବନ ?
ଭାରତୀ-ଭକତ କେଉଁ ରୂପଯାପୀ
ତୃପ୍ତ ହେବ ଏହା ଥରେ ମାତ୍ର ଧ୍ୟାୟି ?
ବଚନ-ବିଷୟ ନୁହଇ ଏ ଛବି,
ହୃଦ ସେ କେବଳ ପାରେ ଅନୁଭବି ।
ନାନା ତୀର୍ଥଜଳ ଆସି ଦେବା-ନଦୀ
ପୂତ କରେ ତୋର ଅଙ୍ଗ ତହିଁ ମିଶି ।
ସର୍ବ-ଦେବ-ଦେବୀ ସ୍ନାନେ ପବିତ୍ରିତ
ନୀଳାଚଳ-ପାଦେ ବହେ ଯେ ସରିତ ।
ପୁନ୍ନାଗ-ଅରଣ୍ୟ-ଲକ୍ଷ୍ମୀ-ଦରପଣ,
ତେଜଃପୁଞ୍ଜ-ଭୃଗୁ-ପ୍ରଭାବେ ପାବନ ।
ଭାର୍ଗବୀ, ସ୍ୱର୍ଗର ସୁଗମ ନିଃଶ୍ରେଣୀ,
ମନୋହର ଯାର ନୀଳ-ନୀରବେଣୀ ।
ସ୍ନାନକାଳେ ଦ୍ୱିଜ କୁମାରୀ ନିଚୟ,
ମୁଖେ ଦିଶେ ହେମ-ତାମରସମୟ ।
ମଞ୍ଜୁ-କୁରୁଅନା-କୁଞ୍ଜ-ବିହାରିଣୀ
ସାକ୍ଷୀ-ଗୋପୀନାଥ-ହୃଦୟହାରିଣୀ ।
ଦ୍ୱିଜକନ୍ୟା-ଲକ୍ଷ୍ମୀ-ସ୍ନାନେ ପୁଣ୍ୟନୀରା,
ସୌଗନ୍ଧିକ-ଗନ୍ଧେ ସୁରୁ ରହିଚିରା ।

ଦୟାବୀର ଧୀର ମୁନୀନ୍ଦ୍ର ଦଧୀଚ
ଅଭିଷେକ ଫଳେ ପୂତ ଯାର ଖ୍ୟାତ ।
ଭବତଳେ ବିଭୁ-ଦୟା ମୂର୍ତ୍ତିମନ୍ତ,
ଧଉଳୀ ଦର୍ପଣ ଦୟା-ସ୍ରୋତସ୍ୱନ୍ତ ।
ଭୁବନେଶ୍ୱରଙ୍କ କେଳି ଉପବନ
କିଶଳୟ-ତାମ୍ର ଏକାମ୍ର-କାନନ ।
ଦ୍ରୁମରାଜି-ଛାୟା ଅନ୍ଧାରେ ଯାହାର
ମୃଦୁ କଳନାଦେ ବହେ ସ୍ୱଚ୍ଛଧାର ।
ନଦୀ-ମନ୍ଦାକିନୀ ଅମନ୍ଦ ଗାମିନୀ,
ରଣପୁର-ରାଷ୍ଟ୍ର ବନବିହାରିଣୀ ।
ଏ ଆଦି ବିବିଧ ପୁଣ୍ୟତୀର୍ଥ ସଙ୍ଗ
ଲଭି ପରିପୁଷ୍ଟ ତୋର ନୀଳଅଙ୍ଗ ।
ନିଜେ ତୀର୍ଥେଶ୍ୱର ସର୍ବ-ତୀର୍ଥାଶ୍ରୟ
ତୋ ସଙ୍ଗେ କରନ୍ତି ନୀର-ବିନିମୟ ।
ପବିତ୍ର ସୁନ୍ଦର, ସୁନ୍ଦର ପାବନ,
ତୋଠାରେ ହୋଇଛି ଏହା ସଂଘଟନ ।
ତେଣୁ ସିନା ତୋର ତୀର-ଦ୍ୱୀପାବଳୀ
ଦେବଦେବୀଙ୍କର ପ୍ରିୟ ବାସସ୍ଥଳୀ ।
ତେଣୁ ସିନା ତାରା, ଚଣ୍ଡୀ, ଭଗବତୀ
ସରାଗେ ତୋ ତୀରେ ବହିଲେ ବସତି ।
ତେଣୁ ନାଗେଶ୍ୱର-ନିକୁଞ୍ଜ-ବିଳାସୀ
ପ୍ରଭୁ ଚଣ୍ଡେଶ୍ୱର ତୋ ତୀର ନିବାସୀ ।
ତୋ ଦର୍ଶନେ କ୍ଷୁଦ୍ର ମନୁଷ୍ୟର ଚିତ୍ତ
ଦେଶେ କାଳେ ହୁଏ ଦୂର-ବିସ୍ତାରିତ ।
ଅଜ୍ଞାତର ତୁହି ସାକ୍ଷୀ ପୁରାତନ,
ଦେଖିଲୁ ନରର ଉତ୍ଥାନ ପତନ ।
କେତେ ରାଜଧାନୀ ତୋ ତୀରେ ଉତ୍ଥିତ
ହୋଇ ତହିଁ ପୁଣି ହେଲେ ଅସ୍ତମିତ ।

ଧୋଉଅଛୁ ତୀର ନୀଳ ଊର୍ମିମାଳ
ଏବେ ତାଙ୍କ କାଳ-ଚର୍ବିତ କଙ୍କାଳ ।
କେତେ ରାଜା କେତେ ଦିଗ୍‌ବିଜୟୀ ବୀର
ଆଲୋଡ଼ିଲେ ତୋର ସ୍ନିଗ୍ଧ ନୀଳ ନୀର ।
ତୋ ଆକାଶ ପୂରି ଜୟ-ବାଦ୍ୟ-ରୋଳେ
ଉଡ଼ାଇ ବାନା ତୋ ପବନ-ହିଲ୍ଲୋଳେ,
ସଦମ୍ଭେ ବାହିଲେ ତୋର ବକ୍ଷେ ତରୀ
ଅକ୍ଷୟ ଯଶର ଆଶା ବକ୍ଷେ ଧରି ।
ଅଭିଯାନେ ତାଙ୍କ ତରୀ-ମେରୁଦଣ୍ଡେ
ଯେ ରେଖା ପଡ଼ିଲା ତୋର ନୀଳ ଗଣ୍ଡେ,
ସେହି ରେଖା ପ୍ରାୟେ ତାଙ୍କ ଯଶମାନ
ଜାତ ମାତ୍ରେ ସିନା ହେଲା ଅନ୍ତର୍ଦ୍ଧାନ !
ବୃଥା ହାଣି ଆହା ଲକ୍ଷ ଲକ୍ଷ ମଥା !
କେତେ ଧନ ପାଇଁ କଲେ କେତେ କଥା ।
ଯଶରଙ୍କ ହୋଇ ପଦାଙ୍କ ସେ ତୀରେ
ରଖି ପାରିଲେ କି ଯଶ-ପଦାଙ୍କରେ ?
ସୁଲଭ ଯେ ଲାଞ୍ଚ-ବନ୍ଦୀ କୁଳ ଯଶ,
କାଳ କି ସେ ଲାଞ୍ଚେ କେବେ ହୁଏ ବଶ ?

# ଅକିଞ୍ଚନର ଉକ୍ତି (ଦରବାର)

**କବିବର ରାଧାନାଥ ରାୟ**

ଅକିଞ୍ଚନ କେତ୍ତୁ କହେ ହାତ ଯୋଡ଼ି,
ବୃଥା ଲାଗ କିପାଁ କାମୋଡ଼ା କାମୋଡ଼ି ?
ଅଳ୍ପ ଦିନ ସ୍ଥିତି ପାଇଁ ଭବ ଚଟି,
ଏଥି ଲାଗି କିପାଁ ଏତେ କଟାକଟି ?
ମଣ ସିନା ଆପଣାକୁ ବଡ଼ କରି
ମାନ କଥା ବୃଷ ଦେହେ ମଶାପରି ।
ମଞ୍ଚରେ କାହାର ପ୍ରବେଶ ପ୍ରୟାଣେ
ଓଜନ ଉଶ୍ୱାସ ମଞ୍ଚ ତ ନ ଜାଣେ ।
ଦେଖ ସାବଧାନେ ଜ୍ଞାନ-ନେତ୍ର ଫେଇ,
ତୁମ୍ଭ ମଧ୍ୟେ ସାନ ବଡ଼ ନାହିଁ କେହି ।
ସାନ ବଡ଼ ଜ୍ଞାନ ଭେକର ଭିଆଣ,
ଭେକ ତଳେ କେହି ନାହିଁ ବଡ଼ ସାନ ।
ଜଣେ ଜଣେ ଗୋଟି ଗୋଟିଏ ସୁଆଙ୍ଗ,
ଘୁଲିଯିବ ଭବଲୀଳା ହେଲେ ସାଙ୍ଗ ।
ସର୍ବେ ଯିବ ଭାଇ; ଉଭେଇ ଅଚିରେ,
ବୁଦ୍‌ବୁଦ ପରାୟେ ଏହି ନଦୀ-ନୀରେ ।
ଅଖଣ୍ଡ-ଦଣ୍ଡାୟମାନ-କାଳସିନ୍ଧୁ
ମଧ୍ୟେ ବିନ୍ଦୁ ରହି ନୁହ ଏକ ବିନ୍ଦୁ ।
ମାଟି ଘଟେ ବୃଥା ବହି ଅଭିମାନ
ଅଜ୍ଞାନେ ଧରାକୁ କର ସରାଜ୍ଞାନ ।
ଅଜ୍ଞାନେ ନଶ୍ୱର ଭାଗ୍ୟର ଗରବେ
ଖେଳ ତୁମ୍ଭେ ତିମି, ଶଫରୀ ସରବେ ।

ସପ୍ତବିତସ୍ତିର କୀଟ ହୋଇ ଭାଇ,
ବୃଥା କର କିପାଁ ଭାଗ୍ୟର ବଡ଼ାଇ ?
ବୃଥା କର କିପାଁ ସମ୍ପଦେ ବିଶ୍ୱାସ ?
ବିଜୁଳି ପ୍ରାୟ ଯା ବିଭବର ବିକାଶ ।
ସୁଖ ଝଟକେ ଯେ ଚକ୍ଷୁ ଚମକାଇ,
ଦୁଃଖ ବଜ୍ରେ ପରେ କରେ ଧରାଶାୟୀ ।
ବୃଥା ବାନ୍ଧି ଏହି ଭଙ୍ଗୁର ରୋଗଭୂ
ମଣ ଆପଣାକୁ ଜଣେ ଜଣେ ପ୍ରଭୁ ।

ରୋଗ ବ୍ୟାଜେ କାଳ ଥରେ ଥରେ ଚୁଟି
ଝିଙ୍କିଦେଲେ, ଏହି ଦର୍ପ ଯାଏ ତୁଟି ।
ଦର୍ପ ତୁଟେ କ୍ଷଣେ ଭେଟେ ବିପଦର
ହାଟବାଟେ ଆସି ଯେ ନ ଦେଇ ଖବର ।

ଅବଧି କି ସେହି ଦର୍ପ ତୁଟି ନାହିଁ ?
ଲଢ଼ୁଛ କିପରି, କିବା କଥା ପାଇଁ ?
କେତେ ଦିନ ଲାଗି ମର୍ତ୍ତ୍ୟେ ଅବା ଘର ?
ଏଥିଲାଗି କିପାଁ ଏଡ଼େ ଆଡ଼ମ୍ବର ?

ମର୍ତ୍ତ୍ୟେ ପଡ଼ କାନ୍ଦ ଲୋଡ଼ ଦୁଧ ଥୋଡ଼ା,
ଯିବାବେଳେ ଛଅ ଖଣ୍ଡି କାଠ ଲୋଡ଼ା ।
ମଧ୍ୟେ କେତେ ଦିନ ମାତର କୁଣିଆ
ଏଥିପାଇଁ ପୁଣି ନ ଅଣ୍ଟେ ଦୁନିଆ ।
କେତେ ଦିନ ପାଇଁ ଦର୍ପର ପତାକା
ତୋଳି ଦେଉଥିବ, ଖାଉଥିବ ଧକା ।
ଏହି ଦରବାରେ ରୁଣ୍ଡି ଯେତେ ନରେ
ଏଥିରୁ ଥୋକାଏ ବର୍ଷକ ଭିତରେ,
ଅନ୍ୟ ଦରବାରେ ହେବେଟି ତଲବ
ତୁମ୍ଭେ ତହିଁ ଥିବା ନୋହେ ଅସମ୍ଭବ ।
ସେ ଦାରୁଣ ଦରବାରେ ଯିବା ପାଇଁ
ଗାଡ଼ି ଘୋଡ଼ା ଆଦି ଲୋଡ଼ା ହେବ ନାହିଁ ।

ପାଇକ ସ୍ୱରୂପେ ଆସି ସେଗ ନାନା
ଦେଖାଇବେ ତଲବର ପରବାନା ।
ତଲବ ନୁହଇ, ଓ୍ୱାରେଣ୍ଟ ସିନା ସେ,
ନ ଦେବେ ମାଗିଲେ ମହଲତ ମାସେ ।
କରି ଯିବା ପାଇଁ ନୋହି ବ୍ୟତିବ୍ୟସ୍ତ,
ଘରବାଡ଼ି, ଜମି, ଜମା ବନ୍ଦୋବସ୍ତ ।
ଆର୍ତ୍ତ-ଦାଗ-ସୂଚ ସେଦନେ ମୁଖର
ସ୍ନେହକାରି ଜନ-ଲୋତକେ ଜର୍ଜର ।
ମୃତ୍ୟୁଶଯ୍ୟା ଅଣଆଶ ଲୀଳାସ୍ଥଳୀ,
ସେ ଦରବାରର ଭୂଷଣ ଦେହଳୀ ।
ଅଭ୍ରାନ୍ତ-ଘଟିକା-ଯନ୍ତ୍ର ବାମ କରେ,
ଖ୍ରିମ କାଳଦଣ୍ଡ ଧରି ବାମେତରେ ।
ସେହି ବୈଶ୍ୱାନର ଦରବାରେ ନଜେ
ପ୍ରେତପତି ସଭାପତି ରୂପେ ବିଜେ ।
ଥରେ ମନେକର ସେହି ଦରବାର,
କିଭଳି ଆସନ ଲଭିବ ସେଠାର ।
କିଭଳି ପୋଷାକ ଲୋଡ଼ା ହେବ ତହିଁ,
ଲଭିବ ସମ୍ମାନ କେଉଁ ଗୁଣ ବହି ।
ଏ ଦରବାରର ଆସନ-ଫରଦ,
ଚିତ୍ରଗୁପ୍ତ-ପାଞ୍ଜି କରିଦେବ ରଦ୍ଦ ।
ତୋତେ ସେରୁ ଅବା ନସେରୁ ସେ ନ୍ୟାୟ,
ଚରମ ଅଟଇ ଚିତ୍ରଗୁପ୍ତ-ରାୟ ।

□□□

# ଆକାଶ ପ୍ରତି

ଭକ୍ତକବି ମଧୁସୂଦନ ରାଓ

ଅନନ୍ତ ଅପାର ଶୂନ୍ୟରେ ମହାଆକାଶ
ପୃଥିବୀର କୀଟ ମୁହିଁ କ୍ଷୁଦ୍ରବୁଦ୍ଧି ନର ।
କି ମହାନ୍ କି ଗମ୍ଭୀର ତୋହର ପ୍ରକାଶ,
ଭାବିଲେ ସ୍ତବ୍ଧ ଚିତ୍ତ ହୁଅଇ ମୋହର ।

ନ ଥିଲରେ ଯେତେବେଳେ ବିଚିତ୍ର ଭୁବନ,
ନ ଥିଲ ଏ ସୂର୍ଯ୍ୟ ଚନ୍ଦ୍ର ଗ୍ରହ ତାରାବଳୀ,
ନ ଥିଲ ଧରଣୀ ଏହି ଭୂତନିକେତନ,
ଅନନ୍ତ ଅନ୍ଧାରେ ପୂର୍ଣ୍ଣ ଥିଲ ସର୍ବସ୍ଥଳୀ ।

ଅନନ୍ତ ନିବିଡ଼ ଘୋର ଅନ୍ଧକାରମଧ୍ୟେ,
ଥିଲ ବିଶ୍ୱ ରୂପ-ରେଖା ଶୂନ୍ୟ ନିରାକାର ।
ନିସ୍ତରଙ୍ଗ ଥିଲ ଯେବେ ଅନନ୍ତ ସମୟ,
ଘଟନାବିହୀନ ଘୋର କାଳ-ପାରାବାର ।

ନ ଥିଲ ଯେ କାଳେ ସୃଷ୍ଟି-ଲୀଳା ଜଗତର,
କେବଳ ଜାଗ୍ରତ ଥିଲେ ଅନାଦିକାରଣ,
ଦେଶକାଳାତୀତ ବାକ୍ୟ-ମନ-ଅଗୋଚର,
ଅନନ୍ତ ଚୈତନ୍ୟମୟ ବ୍ରହ୍ମ ସନାତନ ।

ସେ କାଳରେ ଅବଲମ୍ବି ଅନାଦି କାରଣେ
ଅସୀମ ଆକାଶ, ଶୂନ୍ୟ ମହାମହିମାରେ
(ସେ ମହିମା, ସ୍ତବ୍ଧ ଚିତ୍ତ ଯାହାର ଚିନ୍ତନେ !)
ବିରାଜିତ ଥିଲୁ ବେଢ଼ି ଅନନ୍ତ ଅନ୍ଧାରେ ।

ସହସା ପ୍ରଥମ ଊର୍ମି ମହାକାଳ-ମଧ୍ୟରେ
ଖେଳିଲା ଅନନ୍ତ ମହାମହେଶ-ଆଦେଶେ,
ସହସା ପ୍ରକାଶେ ଜ୍ୟୋତି-ଧାର ତୋ ଶରୀରେ,
ଶୁଭ୍ର ମନ୍ଦାକିନୀ ଯଥା ବ୍ୟୋମକେଶ କେଶେ ।
ସାକ୍ଷୀ ତୁହି ରେ ଗଗନ, ସୃଷ୍ଟି ପ୍ରକ୍ରିୟାର,
ଦେଖିଲୁ କେମନ୍ତେ ଜ୍ୟୋତି ଭେଦି ତମୋରାଶି
ପ୍ରକାଶିଲା କୋଟି କୋଟି ସୁନ୍ଦର ସଂସାର,
ସୂର୍ଯ୍ୟ ଚନ୍ଦ୍ର ଗ୍ରହ ତାରା ତୋ ଦେହେ ବିନ୍ୟାସି ।
ପୃଥିବୀ ଜନମ ତୁହି ଦେଖିଲୁ ଗଗନ,
ଜଳ-ସ୍ଥଳ-ଅଗ୍ନି-ବାୟୁ ସଂଗ୍ରାମ ଭୈରବ ।
ଦେଖିଲୁ ହିମାଦ୍ରି ଆଦି ଗିରି ଉନ୍ନମନ,
ଅଚଳ ଶିଖରୁ ନଦ ନଦୀର ଉଦ୍ଭବ ।
ପୃଷ୍ପର ପ୍ରଥମ ହାସ୍ୟ ତୋହର ଗୋଚର,
ପ୍ରଥମ ଜୀବର ସୃଷ୍ଟି ତୋର ସନ୍ନିଧାନେ,
ସୃଷ୍ଟି ଆଦି ନର ନାରୀ ଅଗ୍ରତେ ତୋହର,
ସର୍ବଦର୍ଶୀ ଅଟୁ ତୁହି ବିଧିର ବିଧାନେ ।
ଅତୀତର ଇତିହାସ କେ ଜାଣେ ତୋ ପରି,
ସୁଖଦୁଃଖମୟ ଯେତେ ଘଟନାନିଚୟ
ଘଟିଛି ଜଗତେ ସବୁ ବିଦିତ ତୋହର,
ତୋ ଅଗ୍ରତେ ରାଜ୍ୟନାଶ, ରାଜ୍ୟ-ଅଭ୍ୟୁଦୟ ।
ବଳିଷ୍ଠର ଅତ୍ୟାଚାର, ଦୁର୍ବଳ-ଦୁର୍ଗତି,
ସ୍ୱାର୍ଥ ଦ୍ୱେଷ ଲୋଭାଦିର କ୍ରୂର ପ୍ରବଞ୍ଚନା,
ଦେଖିଛୁ ସକଳ, ବ୍ୟୋମ ଗମ୍ଭୀର ମୂରତି,
ତୋପରି ବୁଝିବ କିଏ ପୃଥିବୀ ବେଦନା ।
ଆଦି ସୃଷ୍ଟି କାଳୁ ଅବଗାହି ଜ୍ୟୋତି ଜଳେ
କି ସୁନ୍ଦର କି ଉଦାସ ଦେହଶ୍ରୀ ତୋହର;
କହ ବ୍ୟୋମ, କିଏ ଅଛି ଏ ବିଶ୍ୱମଣ୍ଡଳେ,
ତୋ ରୂପେ ନୁହଇ ମୁଗ୍‌ଧ ଯାହାର ଅନ୍ତର ।

ସକଳ ସୌନ୍ଦର୍ଯ୍ୟଲୀଳା ତୋହର ଉତ୍ସଙ୍ଗେ,
ନିତ୍ୟ ଲୀଳାଭୂମି ତୁହି କବିତା ଦେବୀର,
ନାଚଇ ଅଗଣ୍ୟ ବିଶ୍ୱ ନିତ୍ୟ ଲୀଳାରଙ୍ଗେ
ତୋ ମହାସୁନୀଳ ବକ୍ଷେ ଶାସନେ ବିଧିର ।
କେତେ ବେଶ ଧରି ବ୍ୟୋମ ହେଉ ପ୍ରକାଶିତ,
କେତେବେଳେ ଦିଗମ୍ବର ତୁହି ନୀଳାମ୍ବର,
ନକ୍ଷତ୍ର ଶଶାଙ୍କେ କେବେ ତୋ ଦେହ ଭୂଷିତ,
କେବେ ମେଘ ଆଡ଼ମ୍ବରେ ଦିଶୁ ଭୟଙ୍କର ।
ସୁହାସିନୀ ଉଷାଦେବୀ ଆଲୋକ ନନ୍ଦିନୀ
ବନ୍ଦେ ଭକ୍ତିଭରେ ଯେବେ ତୋର ପଦତଳେ,
ସହସା ହସଇ ଜାଣି ଉଲ୍ଲାସେ ମେଦିନୀ,
ଲାବଣ୍ୟ-ଲହରୀ ଉଚ୍ଛୁଳଇ ଜଳେ ସ୍ଥଳେ ॥
ସହସା କଟାକ୍ଷେ ତୋର ରବି ଜ୍ୟୋତିର୍ମୟ
ରଞ୍ଜଇ ଧରଣୀମୁଖ କନକ କିରଣେ,
ସହସା ଫୁଟଇ ଫୁଲ ବହଇ ମଳୟ,
ବିହଙ୍ଗ ସଙ୍ଗୀତ ଗାଏ ସୁମଧୁର ସ୍ୱନେ ।
ରଞ୍ଜିତ ଜଳଦ-ମଞ୍ଚୁ ଯେବେ ଅବତରି
ବୁଡ଼ଇ ପଶ୍ଚିମେ ଭାନୁ କୋଳରେ ତୋହର,
ଧୀରେ ଧୀରେ ଅନ୍ଧକାର ଚୌଦିଗ ଆବରି
ମଣ୍ଡଇ ନକ୍ଷତ୍ର ମାଳେ ତୋର କଳେବର ।
କି ଗମ୍ଭୀର କି ପ୍ରଶାନ୍ତ ଭାବ ଶର୍ବରୀରେ
ଜାଗଇ ଭାବୁକ ମନେ ତୋର ଦରଶନେ,
କି ମହାନୀରବ ବେଦ ପ୍ରଚାରୁ ଗମ୍ଭୀରେ,
ଶୁଣଇ ନୀରବ ବିଶ୍ୱ ଭୟସ୍ତବ୍ଧ ମନେ ।
କୌମୁଦୀ-ଚର୍ଚ୍ଚିତ ତୋର ନୀଳ କଳେବର
ପ୍ରଶାନ୍ତ ପବିତ୍ର ମୂର୍ତ୍ତି ଭୁବନମୋହନ,
ନିମେଷେ କରଇ ଆହା କୁତ୍ସିତେ ସୁନ୍ଦର,
ଦର୍ଶନେ ପବିତ୍ର କରେ କଳୁଷିତ ମନ ।

ଗହ୍ୱର ବଶିଥକାଳେ ନନ୍ଦିତା ଧରଣୀ
ସ୍ୱପନେ ତୋ ମହାମୂର୍ତ୍ତି କରେ ଦରଶନ,
ହସଇ ସରବେ ତେଣୁ ମହାନନ୍ଦେ ଧନୀ,
ସୁପ୍ତ ଶିଶୁ ଦେଖି ଯେହ୍ନେ ସ୍ୱର୍ଗୀୟ ସ୍ୱପନ ।

ଧନ୍ୟ ଧନ୍ୟରେ ଆକାଶ ଧନ୍ୟ ତୋ ମହିମା,
ମହାଭାବ ଉପୁଜଇ ତୋର ଦରଶନେ,
ଉଦାର ପ୍ରଶାନ୍ତ ତୋର ଅନନ୍ତ ନୀଳମା
ସଂସାରର କ୍ଷୁଦ୍ରଭାବ ବିନାଶଇ କ୍ଷଣେ ।

ମୁହୂର୍ତ୍ତିକେ ଘେନୁ ମୋତେ ରେ ମହାଗଗନ,
ପରମାତ୍ମା ପ୍ରାଣସଖା ମହେଶ ଶ୍ରୀପଦେ,
ମହାପ୍ରେମାବେଶେ ଅଶ୍ରୁ ବର୍ଷି ମୋ ନୟନ,
ଲଭଇ ମୁଁ ସ୍ୱରଗର ଆନନ୍ଦ ସମ୍ପଦେ ।

□□□

# ମୁଁ ହାଟ ବାହୁଡ଼ା

**ବ୍ୟାସକବି ଫକୀରମୋହନ ସେନାପତି**

ଦେଖିଲି ସଂସାରେ ବସିଛି ହାଟ, ଲୋକ ଗହଳରେ ନମିଳେ ବାଟ ।
ଦୋକାନ ପସରା ଧାଡ଼ିକ ଧାଡ଼ି, ବାଟ ଦୁଇପାଶ ବସିଛି ମାଡ଼ି ।
ଭୁଲାଇବା ପାଇଁ ଗହିକ ମନ, ହାଟୁଆଙ୍କ ଦେଖ କେଡ଼େ ଯତନ ।
ହାଟୁଆ ବାଟୁଆ ଅଛନ୍ତି ଧାଇଁ, ହାଟେ କଣାବିକା କରିବା ପାଇଁ ।
ହାଟ କରିବାକୁ ବଳିଲା ମନ, ମାହେକ ନାହିଁ ତ ହାତରେ ଧନ ।
ବାହାରିଲି ହାଟ ଦେଖିବା ପାଇଁ, ଦୋକାନ ମାନଙ୍କୁ ଦେଖିଲି ଗୁହିଁ ।
ପାଟିକରୁଛନ୍ତି ଦୋକାନୀ ମାନେ, ଆସ ଗହିକଏ ମୋହ ଦୋକାନେ ।

ଅଳପ ଲଭରେ ଗୁଡ଼ୁଛି ମାଲ, ଭଣ୍ଡାଭଣ୍ଡି ନାହିଁ ଚିଜ ଅସଲ ।
ବୁଲି ବୁଲି ହାଟେ ମୁଁ କ୍ରମେ କ୍ରମେ, ଗୋଟାଏ ଦୋକାନେ ଗଲି ପ୍ରଥମେ ।
ଏହି ଦୋକାନଟା ଭାରି ଗହଳି, ଧାଉଁଛନ୍ତି ଲୋକ ଦଳକୁଦଳ ।
ହାତେ ବଣାକାଠି ଦୋକାନି ଧରି, ବସିଛନ୍ତି ଯମ ରାଜାଙ୍କ ପରି ।
ଦୋକାନରେ ମାଲ ନ୍ୟାସ୍ତ ବିସ୍ତର, କିଣେ ସେ କପାଳ ଫାଟେ ଯାହାର ।
ଦୋକାନି ବହୁତ ନ କହେ କଥା, ବସିଛନ୍ତି ପୋତି ତଳକୁ ମଥା ।
ଯୋଡ଼ାଏ ଗହକ ଅଛନ୍ତି ଧାଇଁ, ଦୋକାନିଙ୍କ ଠାରୁ ସଉଦା ପାଇଁ ।
ଦୁଇ ଦଣ୍ଡିଦାର ଛିଡ଼ା ଆଗରେ, ଡକା ପାଡ଼ୁଛନ୍ତି ଭାରି ଉଚ୍ଚରେ ।
ସଉଦା ଯେ ନେବ ରହିଣ ଶୁନ, ଦଣ୍ଡିଦାର କଥା ଯାଉଛି ଶୁଣି ।
ଦୋକାନି ପ୍ରଭୁ ତ ନିଜ ବୁଦ୍ଧିରେ, ତଉଲିଲେ ମାଲ ଲଅ ନଗଦରେ ।
ଚଉକିରେ ବସି କଲେ ପ୍ରଚାର, ଏହି ନିଅ ମାଲ ନ୍ୟାସ୍ତ ବିସ୍ତର ।
ଜଣେ ଦେଇ ଶଏଟଙ୍କା କୋର୍ଟ୍‌ଫିସ, କିଣିଲା ବିଚାର ତହୁଁ ଡିସ୍‌ମିସ୍ ।
ଜଣେ କରି ଘରଦ୍ୱାର ବିକରି, ମାଲ କିଣି ଘରେ ନେଲା ଡିଗରି ।
ଦଣ୍ଡିଦାର ଥାଏ ପଛରେ ଧାଇଁ, ବକସିସ ଫିସ୍ ନେବାର ପାଇଁ ।

× × × ×

ଦେଖିଲି ଗୋଟାଏ ଗୃଳ ଦୋକାନ, ଦୋକାନୀର ନାମ ଯେ ଅବଧାନ ।
ଦେଶୀ ସଡ଼ାମାଲ ବିକଇ ସେହି, ପିଲାଏ କିଣନ୍ତି ପଇସା ଦେଇ ।
ଦେଶୀ ମାଲ ନାହିଁ ତା ଗୁଣ କିଛି, ଦୋକାନି ବାପୁଡ଼ା ଯାଚି ଦେଉଛି ।
ସଉଦା ସହିତ ଲଭ ଦୋକାନି, ଦୁଇ ଗୃର ବେତ ଦିଅଇ ଟାଣି ।
ପାଶେ ଅଛି ଆଉ ଗୋଟେ ଦୋକାନ, ପିନ୍ଧିଛି ଦୋକାନି କୋଟ୍ ପେଣ୍ଟଲୁନ୍ ।
ମାଷ୍ଟର ପଦ୍ର ସେ ଦୋକାନି ନାମ, ପାଠ ବିକା ଅଟେ ତାହାର କାମ ।
ବିଲାତି ମାଲ ଯେ ବିକଇ ସେହି, କିଣୁଛନ୍ତି ପିଲା ପଇସା ଦେଇ ।
ଏହି ମାଲ ଦାମ୍ ବହୁତ ଚଢ଼ା, ତଟକା ସେ ନୁହେଁ ପଚରା ସଡ଼ା ।
ନଗଦାନଗଦ ଦେଇ କଉଡ଼ି, କିଣୁଛନ୍ତି ପିଲା ଉଭୁଡ଼ା ପଡ଼ି ।
ଦେଖିଲି ବୁଝିଲି ଏହି ଦୋକାନ, କେବଳ ନୋହେଟି ପିଲା ଭଣ୍ଡାଣ ।
ସୁନ୍ଦର ପାଚିଲା ଫଳ ବହୁତ, ଦୋକାନ ଭିତରେ ଅଛି ମଜୁତ ।
ବାଇରଣ, ପୋପ, ସେକ୍‌ସପିୟର, ବାଡ଼ସାର୍ଥ, ମିଲଟନ, ହୋମର ।
ସ୍ପେନ୍‌ସର, ଫିଲସଫି, ବୋଟାନି, ବିଲାତୁ ହୋଇଛି ଏ ଆମଦାନି ।

ପିଲାଏ ଖାଆନ୍ତି ଏ ସବୁ ଫଳ, ବାପ ଟଙ୍କା ଗଣିହୁଏ କେବଳ ।
ଏସବୁ ଫଳର ଗୁଣ ଓଲଟା, ହୁଏ ଦେହ ସରୁ, ବୁଦ୍ଧି ଟା ମୋଟା ।
ମାନଙ୍କ ହଜମ ଯେ କରି ଜାଣେ, ଜଗତ ଜଣେ ଯେ ଆପଣା ଜ୍ଞାନେ ।
ଅଳପ ଖାଇଲେ ଘଟେ ଜଞ୍ଜାଳ, ବହୁତ ଖାଇଲେ ଫଟେ କପାଳ ।

× × ×

ତାହା ପାଶେ ବସି ଗୋଟେ ଦୋକାନି, ହାତରେ ଧରିଛି ସେ ନାସଦାନି ।
ଆଣ୍ଠୁ ଲୁଗ୍ଥୁ ସାନ ଲୁଗା ସେ ପିନ୍ଧେ, ପୁରୁଣା ଗାମୁଛ ପଡ଼ିଛି କାନ୍ଧେ ।
ଦେଖିଲି ଦୋକାନେ ମାଲ ସକଳ, ନହାତ ପୁରୁଣା ଶୁଖିଲା ଫଳ ।
ଶୁଖିଲା ନଡ଼ିଆ କଲି ବିଶ୍ୱାସ, ଉପରଟା କଡା ଭିତରେ ରସ ।
ମାନଙ୍କ ଦୋକାନି କରିଛି ଫନ୍ଦ, ସଜାଡ଼ି ରଖିଛି ଶବଦ ସନ୍ଧ ।
କାଳିଦାସ, ଭବଭୂତି, ଶ୍ରୀହର୍ଷ, ତାହା ଗୋଦାମର ମାଲ ସର୍ବସ୍ୱ ।
ଘଟଣ୍ଡି ପଟଣ୍ଡି ବେଦାନ୍ତ ବସ୍ତୁ, ଦେଖି ନ ପଚାରେ ଗରାଖ କେହୁ ।
ତୋରି ଦେଇ ରଖିଅଛି ଗମ୍ଭୀରେ, ପୋଟ ପଡ଼ିଲାଣି ମୂଷା ମାଟିରେ ।
ଦେବାପାଇଁ ସେହୁ ଗୋଦାମ ଝାଡ଼ି, ଛୁଞ୍ଚଟାରେ ମାଲ ଦେଉଛି ଗୁଡ଼ି ।
ପୁରୁଣା ମାଲରେ ଶରଧା ନାହିଁ, କଏ ଘେନିଯିବ ତାହା କମ୍ପାଇଁ ?
ମାନଙ୍କେ ଦେଖିଣ ଫଳ ପାଚିଲା, ଘେନଗଲେ ଥୋକେ ବ୍ରାହ୍ମଣ ପିଲା ।

× × ×

ହାଟେ ବୁଲି ବୁଲି ଜନ୍ମିଲା ଜ୍ଞାନ, ମୁଁ ମଧ୍ୟ ମେଲିଲି ଗୋଟେ ଦୋକାନ ।
ଅରଜୁ ଅଛନ୍ତି ଲୋକେ ପଇସା, ମୁଁ ମଧ୍ୟ ପାଇବି କଲି ଭରସା ।
ଝାଡ଼ି ଝୁଡ଼ି ଦେଇ ଦୋକାନ ଘର, ଗୋଦାମେ ଭରିଲି ସାହିତ୍ୟ ମାଲ ।
ବିଲାତି ମାଲକୁ ନାହିଁତ ପୁଞ୍ଜି, ଦେଶୀମାଲ ଦେଲି ଗୋଦାମେ ଗୁଞ୍ଜି ।
ଛାପାଖାନାଠାରୁ ଆଣିଲି କାଲି, ଲାଭ ହେଲେ ସୁଝିଦେବି ମୁଁ ଭାଲି ।
କାଡ଼ିଆ ମାଲରେ ବହୁତ ଦୋଷ, କଳନ୍ତର ବଢ଼ି ବୁଡ଼େ ସର୍ବସ୍ୱ ।
ଭୁଲାଇବା ପାଇଁ ଗରାଖ ମନ, ଟାଙ୍ଗି ଦେଲି କାନ୍ଥେ ସେ ବିଜ୍ଞାପନ ।
ପାଟି କରି ହାରେ ଡାକିଲି ବସି, ଭଲ ମାଲ ଭାଇ ନଅହେ ଆସି ।
ଅଇଲେ ଗରାଖ ଶୁଣି ମୋ ଡାକ, ପଚାରିଲେ ତୁମ୍ଭେ କ ଫଳ ବିକ ?
ବୋଇଲେ ମୁଁ ଅନୁବାଦ ପୁରାଣ, ଆଛା ମିଠାଫଳ ଏହାକୁ ଜାଣ ।
ବୋଇଲି ମୋ କଥା ଶୁଣି ଗରାଖ, ବରକ୍ତରେ କରି ଅଳପ ରାଗ ।

ଏଗୁଡ଼ା ତ ସବୁ ପଚା ପୁରୁଣା, ଏ ସବୁର ମୂଲ୍ୟ ନହାନ୍ତି ଉଣା ।
ଯେବେ ଦେବ ତୁମ୍ଭେ ବନାମୂଲ୍ୟରେ, କୃପାକରି ନେଇ ରଖିବୁଁ ଥରେ ।
ଦେଖାଇଲି ନେଇ ତାକୁ ନଡେଲ, ବୋଇଲା ସେ କଞ୍ଚା ପୁଟୁରୀ ବେଲ ।
ପୁଣି ଦେଖାଇଲି ତାକୁ କବିତା, ବୋଇଲା ଏ ଗୁଡ଼ା ନହାନ୍ତି ପିତା ।
ଗରାଖ ମୁଖରୁ ଏ କଥା ଶୁଣି, ନିଶ୍ୱାସ ପକାଇ ହେଲି ମୁଁ ତୁନି ।
ଭାବିଲି ମୋହର ସରିଲା ପାଠ, ଆଉ କରିବି ମୁଁ କଅଣ ହାଟ ?
ବେପାର ଦେଖୁଛି ଯେ ଲୋକଙ୍କର, ଦେଶୀ ଜିନଷରେ ନାହିଁ ଆଦର ।
କେତେ ଲୋକ ଟଙ୍କା ପଇସା ଦେଇ, ଯାଆନ୍ତି ବିଲାତି ଜିନଷ ନେଇ ।
ଆହୁରି ଶୁଣନ୍ତୁ ଗୋଟାଏ ମଜା, ମାଲ କାଳି ନେଲେ ଯୋଡ଼ାଏ ରଜା ।
ଯେଉଁମାନେ ନେଲେ ମାଲ କାଢ଼ିଆ, ଅବଶ୍ୟ ସେମାନେ ଜାତି ଓଡ଼ିଆ ।
ତୁନି ତୁନି ହୋଇ ରହିଲେ ଘରେ, ଚିଠିର ଉତ୍ତର ନଦେଲେ ଥରେ ।
ଏତେ ହାଟଠାରେ ଦେଖିଲି ଜଣେ, ଗରାଖ ବୋଲି ମୁଁ ତାହାକୁ ଗଣେ ।
ଜାଣିଲି ପର ମୁଁ ସେହି ଚିହ୍ନରି, ଚିହ୍ନନ୍ତି କେ କାଚ, କେଉଁଟା ହୀରା ।
ବାଛି ବାଛି ନେଲେ ଗୋଟାଏ ଫଳ, ବଞ୍ଚିନ କଲି ମୁଁ ଏହା କେବଳ ।
ଲୋକେ ତ ଶୁଣନ୍ତୁ ଏହି ବାରତା, ଲଭ ଲୋକସାନ କପାଳ କଥା ।
ଛାପାଖାନା ଡରେ ଲଭ ନ ଲୋଡ଼ି, ମୂଳେ ମୂଳେ ଦେଲି ମାଲକୁ ଛାଡ଼ି ।
ହେଲେ ହେଉ ପଛେ ବହୁତ ତ୍ରୁଟି, ଛାପାଖାନା ଏଣେ ଧରିଛି ତୋଟି ।
ତ୍ରୁଟି ସହି ମାଲ ବିକିଲେ ବଳେ, ଏଥିରେ କି ଭାଇ ବଣିଜ ଚଳେ ?
ଦେଶୀ ସାହିତ୍ୟ ଯେ ବଣିଜ କଲା, ଜାଣିଥିବ ସେହି ଲୋକଟା ମଲା ।
ଲଭ କଥା ଭାଇ ଥାଉ ପଛକୁ, ବୁଡ଼ାଇ ବସିବ ନିଜ ମୂଳକୁ ।
ଭାବିଲି ହାଟରେ ଥିବି କମାଇଁ, ଦେଲି ବେଳେ ଗୃହଆଡ଼କୁ ରହିଁ ।
ଗୋଟାଇ ପସରା ବୋଝ ମୁଣ୍ଡାଇ, ଘରମୁହାଁ ହୋଇ ଗଲି ପଳାଇ ।
ଝାଡ଼ି ଝୁଡ଼ି ମାଲ ରଖିଲି ଘରେ, ପସୃରିବ ଦିନେ କେହି ବା ଥରେ ।
ଏଣେ ତ ବୁଡ଼ିଲା ସବୁ ଭରସା, ଆହୁରି କପାଳେ ଅଛି ଦୁର୍ଦ୍ଦଶା ।
କାଲି ଦୁଆରକୁ ଆସି ପ୍ରିଣ୍ଟର, କରିବେ ବହୁତ ସେ ହରବର ।
ତାହାଠାରୁ ମାଲ ଆଣିଛି କାଳି, ନ ପାଇଲେ ଟଙ୍କା ଦେବସେ ଗାଳି ।
ଛାପାଖାନା ଲୋକେ ନହାନ୍ତି ମନ୍ଦ, ପଇସା ସକାଶେ ଲଗାନ୍ତି ଦ୍ୱନ୍ଦ୍ୱ ।

ଲେଖିବ କବିତା ଦେବୁ ଛପାଇ, ପଇସା କପାଇଁ ନେବୁରେ ଭାଇ ।
ନହାନ୍ତି ତୁ ଯଦି ଛାଡ଼ିବୁ ନାହିଁ, ରହି ବସି ଦେବ କଳି କମାଇଁ ।
ଲଗିଛୁ ସଂସାର ମଧ୍ୟରେ ହାଟ, ମାନବ ମୋହର ପଡ଼ିଲା ବାଟ ।
ନାହିଁ ଦେହେ ବଳ ହେଲଣି ବୁଢ଼ା, ମୋହ ନାମ ଭାଇ ହାଟ ବାହୁଡ଼ା ।

□□□

# ମହିମା

ଗଙ୍ଗାଧର ମେହେର

ପର ଉପକାର ପୁଣ୍ୟମୟ ବ୍ରତ
ପାଳନ୍ତି ମହତ ଜନ,
ଉର୍ବୀ ଦିବାକର ପର ଉପକାରେ
ଦିଅନ୍ତି ଶସ୍ୟ କିରଣ ।
ପର ତାପ ଲଭି ମହତ କରନ୍ତି
ପରକୁ ଆହ୍ଲାଦ ଦାନ,
ସୁଶୀତଳ ଜଳ ଦାନକରେ ରବି
ରଶ୍ମି ଲଭି ହିମବାନ । ୧ ।
ଉଚ୍ଚେ ଥାଇ ମଧ୍ୟ ନମ୍ର ହୋଇଥାନ୍ତି
ସତତ ମହତ ଜନ,
ରବି, ଶଶୀ, ତାରା କେଡ଼େ ଊର୍ଦ୍ଧ୍ୱସ୍ଥିତ
ସମସ୍ତେ ନତବଦନ ।
ପରେ ଅପକୃତ ହେଲେ ହେଁ ମହତ
କରୁଥାନ୍ତି ଉପକାର,
ଘନ ଗ୍ରାସେ ରବି, ରବିକରାକୃଷ୍ଟ
ବାଷ୍ପରେ ଘନ ସଞ୍ଚାର ।

ବିପଦ-ସାଗରେ ବୁଡ଼ନ୍ତି ମହତ
ବିପନ୍ନ ସାହାଯ୍ୟ ପାଇଁ
ତୃଷାତୁର ପାନ୍ଥ ତୃଷା ନାଶେ ପାନ୍ଥ-
ତରୁ, ମରୁଭୂମେ ଥାଇ ।
ମହତ ପ୍ରସାଦେ କ୍ଷୁଦ୍ରହୁଏ ବଡ଼
ପ୍ରକୃତି ସିଦ୍ଧ ବିଧାନ,
ବିଶ୍ୱବସୁ-କରେ ଅଭ୍ରଖଣ୍ଡ ଦେଖ
ଦିଶେ କେଡ଼େ ତେଜସ୍ୱାନ ।
ମହତ ପ୍ରତାପ ଲଭି ନୀଚ ହୁଏ
ମହତୁଁ ପ୍ରତାପଶାଳୀ,
ସୂର୍ଯ୍ୟ-କରୁଁ ବଳି କେତେ ତାପ ଦିଏ
ସୂର୍ଯ୍ୟକର-ତପ୍ତ ବାଲି ।
ମହତ ଜନ୍ମଇ ହୀନଗର୍ଭେ ଏହା
ଭବେ ନୁହେଁ ଅସମ୍ଭବ
ପଙ୍କରୁ କମଳ ଶୁକ୍ତିରୁ ମୌକ୍ତିକ
ହୁଅଇ ସଦା ସମ୍ଭବ ।
ବିପଦ ସମୟେ ମହତ ଜନର
ଧୈର୍ଯ୍ୟ ନ ହୁଏ ଭଙ୍ଗ,
ଦାହେ ପ୍ରହାରଣେ ଶୁଦ୍ଧ ଜମ୍ବୁନଦ
ଯେ ରଙ୍ଗକୁ ସେହି ରଙ୍ଗ ।
ଆନନ୍ଦେ ବିଷାଦେ ସମଭାବେ ଥାନ୍ତି
ମହତ ସ୍ୱଭାବ ଧରି,
ପୂର୍ଣ୍ଣିମାରେ ଯଥା ନାଚଇ ସାଗର
ଅମାବାସ୍ୟାରେ ସେପରି ।
ନପାରଇ କରି କୁସଙ୍ଗ ମହତ
ସ୍ୱଭାବ ପରିବର୍ତ୍ତନ,
ଥିଲେ ହେଁ କଣ୍ଟକ କାନନେ ସୁପୁଷ୍ପ
କରେ ବାସ ବିତରଣ ।

କୁସ୍ଥାନ ବାସରେ ମହତ ଜନର
ସଦ୍‌ଗୁଣ ନହୁଏ ନାଶ,
ଶ୍ମଶାନ ଭୂମିରେ ଜନ୍ମିଲେ ତୁଳସୀ
ହୁଅଇ କି ହୀନବାସ ?
ଉଚ୍ଚକୁଳେ ଜାତ ହେଲେ ହେଁ ଉଚ୍ଚରେ
ରହି ନ ପାରେ କୁଜନ,
କାଦମ୍ବିନୀ-ଗର୍ଭେ ଜନମି କୁଳଶ
ନୀଚକୁ କରେ ଗମନ ।
ବିଚଳିତ କରି ନପାରେ ମହତ
ମନ, ଦୁଷ୍ଟ କୁବଚନ,
ବ୍ୟାଧ ବିଷମୁଖ ଶରେ କିସ ହୋଇ
ପାରେ ଶୈଳ ଅପଘନ ।
ମୂଢ଼ ଜନମାନେ ବୁଝି ନ ପାରନ୍ତି
ମହତ ବଚନ ମୂଲ୍ୟ,
ସୂର୍ଯ୍ୟ ସମ ତାରା- ଗଣଙ୍କୁ ମଣନ୍ତି
ସାଧାରଣ ଦୀପତୁଲ୍ୟ ।
ମହତ ଚରିତେ ମିଥ୍ୟା ଦୋଷାରୋପ
ନୀଚତାର ପରିଚୟ ।
ତହିଁ କଷ୍ଟ ହୋଇ ନପାରେ ମହତ
ମହିମାର ଅପଚୟ ।
ଅକ୍ଷୟ ଚନ୍ଦ୍ରଙ୍କୁ କ୍ଷୟୀଜ୍ଞାନ କଲେ
କ୍ଷତି କିସ ଚନ୍ଦ୍ରଙ୍କର,
ଦୋଷସିନା ତାହା ନଜର ଅଜ୍ଞାନ
ତମସାନ୍ଧ ନୟନର ।
ଲୋକ ନେତେ ଅସ୍ତ ଦିଶନ୍ତି ମହତ,
ଅସ୍ତ କାହିଁ ତାହାଙ୍କର ?
ଆମେରିକା ଖଣ୍ଡେ ନବୋଦିତ ଆମ୍ଭ
ଅସ୍ତଗତ ଦିନକର ।

ମହତ ଯଶରେ ଈର୍ଷାକଲେ ନୀଚ
ହୃଦଦାହ ମାତ୍ର ସାର,
ରବିଙ୍କି ଯେ ଦେଖେ କଠୋର ଦୃଷ୍ଟିରେ
ଚକ୍ଷୁ ତେଜ ନାଶେ ତାର ।
ଆନନ୍ଦ ମନରେ ବୁଲଇ ସୁଜନ
ମହତ ସୁଯଶ ଗାଇ,
ଚନ୍ଦନ ସୌରଭ ବାଣ୍ଟଇ ମଳୟ-
ସମୀରଣ ଧୀରବାହି ।
ମହତ ଆହ୍ଲାଦ ଦିଅନ୍ତି ତହିଁରେ
ଦୁର୍ଜ୍ଜନ କରଇ କଳି,
ତପତ ତଇଳ କଟାହେ ସଲିଳ
ଦେଲେ ଯଥା ଉଠେ ଜଳି ।
ମହତର ମୁଖ ମଧୁପୂର୍ଣ୍ଣ, ମୁଖେ
କଟୁ ଥୋଇ ନୀଚ ସୁଖୀ,
ମଧୁପୂର୍ଣ୍ଣ ମଧୁ- ଚକ୍ର ଅହୋ ବୁଲେ
ଅଗ୍ନିମୁଖେ ଉଲକାମୁଖୀ ।
ପର ଦୁଃଖ ଦେଖି ମହତ ହୃଦୟ
ଅଧିକେ ହୁଏ ଦୁଃଖିତ
ମେଘନାଦେ ଯଥା ମହାଶୈଳ ଖୋଲ
ଅଧିକେ ପ୍ରତିଧ୍ୱନିତ ।
ମହା ସଙ୍କଟକୁ ମନେ ନ ଗଣନ୍ତି
ମହତ ଆଶ୍ରିତ ଜନ,
ମହୋଦଧି-ଗର୍ଭେ ବିଚରଇ ପୋତ
ଆଶ୍ରୟ କରି ପବନ ।
ପର-ଉପକାର- ସାଧନ ମୂଳକ
ମହତ ଆଶ୍ରୟ ସାର,
ବାତାଶ୍ରିତ ପୋତ କେତେ ଜନ ଦ୍ରବ୍ୟ
ସାଗର କରଇ ପାର ।

ଜଗତ ହୁଅଇ ମହତ କର୍ମର
ଶୁଭମୟ ଫଳଭାଗୀ;
ମହତ କୌଶଳେ ଦାସୀ କାର୍ଯ୍ୟ କରେ
ବିଦ୍ୟୁତ ଜଗତ ଲାଗି ।
ବ୍ୟୋମ ସଞ୍ଚରଣ- ଶୀଳ ଜଳକଣ
ସାରଥୀ ଧରଣୀ ତଳେ,
ଅଶ୍ୱବିନା ରଥ ବାହେ ବାୟୁ ବେଗେ
ମହତ କର୍ମ କୌଶଳେ ।
ବିନୟ ସୂଚଇ ମହତ, ପ୍ରଭାତ
ସୂଚେ ସୂର୍ଯ୍ୟ ଆଗମନ,
ବସନ୍ତ ସମୟ- ସୂଚକ କୋମଳ
ମଧୁର କୋକିଳ ସ୍ୱନ ।
ନୀଚ ପ୍ରଶଂସାରୁ ମହତ ଭର୍ତ୍ସନା
ଶତଗୁଣେ ଶ୍ରେୟସ୍କର,
କୁକ୍କୁଟ ମୁକୁଟେ କି କାର୍ଯ୍ୟ, ମୟୂର-
ପୁଚ୍ଛରେ ସିନା ଆଦର ।
ଇହ କାଳୁଁ ପର- କାଳରେ ଅଧିକ
ଯଶଃ ଖ୍ୟାତି ମହତର,
ନଷ୍ଟ କୁସୁମର ବାସ ହୋଇଥାଏ
ଅନ୍ତରେ ଅଧିକତର ।
ସାହସ କଳପ- ତରୁ ଜାତକରେ
ମହତ ହୃଦୟ ସ୍ୱର୍ଗ,
ସେ ପାଦପେ ଫଳେ ସୁଧାମୟ ଫଳ
ଭୁଞ୍ଜନ୍ତି ମାନବ-ବର୍ଗ ।
ଧନ୍ୟ ସାହସକୁ, ମରଣ ଭୟକୁ
ସାହସ କରନ୍ତି ଜୟ,
ଏକା ସାହସର ଭୃତ୍ୟଭାବେ ଥାନ୍ତି
ରାଜଶ୍ରୀ ସମ୍ପଦଚୟ ।

ଅସାଧ୍ୟ ସାଧଇ ଅଲଭ୍ୟ ଲଭଇ
ମାନବ କରି ସାହସ,
ସାହସ ପ୍ରସାଦେ ଆବିଷ୍କାର କଲେ
ଆମେରିକା କଲମ୍ବସ ।
ଅନନ୍ତ ମାର୍ଗରେ ବିଚରଇ ନର
ସାହସର କର ଧରି,
ଦୁଃଖ-ରତ୍ନାକରୁ ସୁଖ-ମହାରତ୍ନ
ସାହସ ପାରେ ଉଦ୍ଧରି ।
ଭାରତ ତ୍ରିଦିବ ହିମାଦ୍ରି ଶିଖରେ
ହୋଇଛି ମାନବ ବାସ,
ଅସୁର ନଗରେ ନର ନରପତି
ସାହସେ କରି ବିଶ୍ୱାସ ।
ଯଶରେ ଆଦର ନାହିଁ ମହତର
ଯଶ ଆପେ ଲୋଡ଼ିଯାଏ,
ଲୋଡ଼ା ବିନା ଦେଖ ଗଜରାଜ ଶିରେ
ମୁକ୍ତା ସ୍ୱତଃ ହୋଇଥାଏ ।
ମହତ ପ୍ରତିଭା- କ୍ଷେତ୍ର ଜାତ ଯଶ
ନିଜେ ହୁଏ ପ୍ରକାଶିତ,
ଘନେ ଘନଲତା ସଙ୍ଗେ ଘନଘୋଷେ
ହୁଏ ଯଥା ବିଘୋଷିତ ।
ମହତ ମନ୍ଦିରେ ପଦ୍ମାଳୟା ଆସି
ବିଳସନ୍ତି ବିନାଦରେ
କିଏ ଡାକିଥାଏ ବାସବ-ଧନୁକୁ
ଖେଳିବାକୁ ପ୍ରପାତରେ ?
ବସନ ଭୂଷଣ ଆଡ଼ମ୍ବର ଯେନି
ମହତ ନହୁଏ ଜନ,
ବିବିଧ ରଙ୍ଗରେ ରଞ୍ଜିତ କାଚ କି
ହୁଏ ହୀରକ ଭାଜନ ?

ମହତ ଏକା ସେ    ଯେ ନର-ପୁଙ୍ଗବ
ପ୍ରକୃତ ଧର୍ମେ ପଣ୍ଡିତ,
ଈଶ୍ୱର-ପୀରତି-    ସାଧକ ପବିତ୍ର
ଧରମ-ରତ୍ନେ ମଣ୍ଡିତ ।
ଧର୍ମ ମହାତରୁ    ପକ୍ଷରେ ମାନବ
ହୃଦୟ-କ୍ଷେତ୍ର ଉର୍ବର,
ସୁଶିକ୍ଷା-ଲଙ୍ଗଳେ    ଚଷି ଧର୍ମ-ବୀଜ
ତହିଁରେ ରୋପଣ କର ।
ଆବଶ୍ୟକ ତହିଁ    ସଦାଚାର ଜଳ
ସତସଙ୍ଗ ଆଲ-ବାଳ,
ବାହାରଇ ଶାଖା    ବିନୟ କରୁଣା
ସୌଜନ୍ୟ ସତ୍‌କର୍ମ ଡାଳ ।
ଈଶ୍ୱର ଭକତି,    ପର ଉପକାର
ପଲ୍ଲବେ ହୁଏ ସୁନ୍ଦର,
ଫୁଟଇ ପବିତ୍ର    ଶୁଭ୍ର ଦିବ୍ୟ ଫୁଲ
ତାବାସ ଅବିନଶ୍ୱର ।
ସୌରଭ ଲୋଭରେ    ଜଗତ ଈଶ୍ୱର
ଚୁମ୍ବନ୍ତି ହୋଇ ଭ୍ରମର,
ଫଳଇ ଅମୃତ-    ପୂର୍ଣ୍ଣ ଯଶଫଳ
ଭକ୍ଷଣେ ନର ଅମର ।
ମହତକୁ ଏକା    ମହତ ଚିହ୍ନଇ
ଇତର ତହିଁକି ଅନ୍ଧ
ସୂର୍ଯ୍ୟୋଦୟ ଦେଖି    ପ୍ରକୃତ ହସଇ
ଉଲ୍ଲୂକର ଦୃଷ୍ଟି ବନ୍ଧ ।

# ଭବହାଟ

ଗଙ୍ଗାଧର ମେହେର

(ଇନ୍ଦ୍ରମଣ୍ଡି)

ଭବେ ଭବିତବ୍ୟ ଅବଶ୍ୟ ଘଟଇ
ନହୁଏ କେବେ ଅନ୍ୟଥା
ମୂଢ଼ ଜନେ ସିନା ତହିଁ ପାଇଁ ବୃଥା
ହୃଦେ ପୋଷୁଥାନ୍ତି ବ୍ୟଥା ।
ବିଧିବିଧାତବ୍ୟ ବିଷୟ ନ ବୁଝି
କ୍ଷୋଭ କରବାର ମନେ
ପ୍ରକୃତ ମାନବ ପରିପେ ଉଚିତ
ନୁହେଁ ଭବାତୁଶ ଜନେ ।
ନଦୀ ପ୍ରବାହରେ ଭାସିଯାନ୍ତି ସିନା
ତଟସ୍ଥିତ ତରୁମାନ;
ପ୍ରବାହ ଉପରେ ପ୍ରବାହ ଆସିଲେ
ଟଳଇକି ସାନୁମାନ ?
କର୍ମଫଳ ଯେନ ଜନ୍ମ ଲଭୁଛନ୍ତି
ଜୀବଗଣ ବସୁଧାରେ,
ଫଳ ଭୁଞ୍ଜି ସାରି ଯାଉଛନ୍ତି ପୁଣି
କୃତକର୍ମ ଅନୁସାରେ ।
ଜୀବନ-ପ୍ରଦୀପ ଜଳୁଥାଏ ଦେହେ
ଆୟୁସ୍ନେହ ଥିବାଯାଏ,
ଆୟୁସ୍ନେହ ସବୁ ନିଃଶେଷିତ ହେଲେ
ନିର୍ବାଣ ସେ ହୋଇଯାଏ ।

ଅଚିନ୍ତ୍ୟ ପୁରୁଷ-　　　　ହସ୍ତେ ଅଛି ସେହି
ଠେଲ ଦେବା ଅଧିକାର
ଅପକ୍ଷପାତରେ　　　　ବଣ୍ଟନ କରନ୍ତି
କର୍ମ ଦେଖି ଯେ ଯାହାର ।
ମର୍ତ୍ତ୍ୟମଣ୍ଡଳରେ　　　　ଜନମିଲେ ଧନେ
ଅବଶ୍ୟ ଅଛି ମରଣ,
ସର୍ବଗ୍ରାସୀ କାଳ　　　　ପ୍ରତି ନିମିଷରେ
କରୁଛି ଆୟୁ ହରଣ ।
ଥିଲେ କେତେ କେତେ　　　　ଅମିତ ତେଜସ୍ୱୀ
ବସୁନ୍ଧରା ପତି ମାନେ,
ନାମ ମାତ୍ର ଅଛି　　　　ତନୁ ଯାଇଅଛି
ଭସ୍ମୁଙ୍କର ଶମଶାନେ ।
ତବ ବଂଶେ ଥିଲେ　　　　ନୃପତି ମୁକୁଟ-
ମଣି ପୁରଞ୍ଜୟ ନାମେ,
ମରଲୋକ ଲଙ୍ଘି　　　　ବ୍ୟାପିଥିଲା ତାଙ୍କ
କୀରତି ଅମର ଧାମେ ।
ସେହି ସଂଶୋଧନ　　　　ବୀରଗଣାଗ୍ରଣୀ
ଆଜ ଏ ମହୀରେ କାହିଁ ?
କାଳର ଅଜେୟ　　　　ପରାକ୍ରମକୁ ସେ
ଲଙ୍ଘି ତ ପାରିଲେ ନାହିଁ ।
ତୁମ୍ଭ ପିତାମହ　　　　ଦିଲୀପ ଭୂପତି
ପିତା ରଘୁ ମହାରାଜ,
ଦୋର୍ଦ୍ଦଣ୍ଡକୁ ଯାର　　　　ମଘବା ଶଙ୍କଇ
ସେହି ଅଛନ୍ତି କି ଆଜ ?
ଚିରସ୍ଥାୟୀ ନୁହେଁ　　　　ଶରୀର-ପାଦପ
ଭବତରଙ୍ଗିଣୀ ତୀରେ,
ପ୍ରାଣ-ମୂଳ ମାଟି　　　　ଧୌତ ହୋଇଗଲେ
ଭସିଯାଏ କାଳ-ନୀରେ ।

କେହି ତ କାହାର                ନୁହନ୍ତି ସ୍ୱଜନ
ମାୟାମୟ ଭବ-ହାଟେ,
ଆପଣା ଆପଣା               କଉଡ଼ି ସଉଦେ
ଫେରୁଛନ୍ତି ନିଜ ବାଟେ ।

□□□

# ଗ୍ରାମ ଶ୍ମଶାନ

ପଲ୍ଲୀକବି ନନ୍ଦକିଶୋର ବଳ

ଦେଖି ଦେଖି ପଲ୍ଲୀ-ଗ୍ରାମ-ଶୋଭା
କି ସୁନ୍ଦର ଆହା ମନୋଲୋଭା !
ଭୂଞ୍ଜି ଶୋଭା ମଧୁରିମା           ଛାଡ଼ି ଅଛି ଗ୍ରାମସୀମା
ଗ୍ରାମସୀମା ଦେଇ ବହେ ନିର୍ଜନେ ସରିତ,
ନଦୀ ବକ୍ଷେ ଭାସିଯାଏ ବିଦେଶୀ-ବୋଇତ ।

ତଟିନୀ-ପୁଳିନ ଉଚ୍ଚଦେଶେ
ନିର୍ଜ୍ଜନ ନିସ୍ତବ୍ଧ ଗ୍ରାମ ଶେଷେ
ନାନା ପ୍ରକାଣ୍ଡ ବିଟପୀ          ଘନ ଗୁଳ୍ମଲତା ଟପି
କାହିଁ ଉଭା ହୋଇଛନ୍ତି ଭେଦି ଅଭ୍ରଦେଶ,
କ୍ଷୁଦ୍ର ଜନ ମଧ୍ୟେ ଯେହ୍ନେ ମହାତ୍ମା ବିଶେଷ ।

ଏହି ସ୍ଥାନେ ଗ୍ରାମର ଶ୍ମଶାନ,
ଥିଲେ ଗ୍ରାମେ ଧନ ଭାଗ୍ୟବାନ,
ତେଜିଣ ସଂସାର ମାୟା          ଯେବେ ବିସର୍ଜିଲେ କାୟା
ଏହି ସ୍ଥାନେ ହେଲେ ସର୍ବେ ଭସ୍ମେ ପରିଣତ;
ସ୍ମୃତିପଟେ ଉଭାସଇ ଅଦ୍ଭୁତ ଜଗତ ।

କି ବର୍ଣ୍ଣିବ ସେ ମୃତ୍ୟୁ ସଂସାର
ଅଜ୍ଞାତ ସେ କ୍ଷେତ୍ର ବର୍ଣ୍ଣନାର,
ଅପୂର୍ବ ବିଷାଦ ଆସି          ମୋର କ୍ଷୁଦ୍ର ପ୍ରାଣ ଗ୍ରାସି
ଘୋଟିଲା ନିମେଷ ମଧ୍ୟେ ନିଖିଳ ଜଗତ,
ମୃତ ପ୍ରିୟଜନ ସ୍ମୃତି ହୃଦୟେ ଜାଗ୍ରତ ।

କ୍ଷୁଦ୍ର ଗ୍ରାମେ କେତେ ପରିବାରେ
ନିକ୍ଷେପିଣ ଶୋକ-ଅନ୍ଧକାରେ
ଜନକ ଜନନୀ କେହି          ସନ୍ତାନେ ପରମ ସ୍ନେହୀ
ଭ୍ରାତା ଭଗିନୀ ବା ପ୍ରିୟେ ତେଜଣ ଏ ସ୍ଥାନେ
ଅଛନ୍ତି ବିଲୟି ଲଭି ଭୀଷଣ ଶ୍ମଶାନେ ।

ପ୍ରାଣପ୍ରିୟା ଶିଶୁ ସ୍ୱସନ୍ତାନ
ତେଜି ମାତା କରିଛି ପ୍ରୟାଣ,
ପ୍ରିୟତମ ପରିବାର          ଛାଡ଼ି ଗୃହସ୍ଥ ତାହାର
ଆସି ଏଥି ଶୋଇଅଛି ଅଚିନ୍ତା ନିଦ୍ରାରେ,
ଭସାଇ କୁଟୁମ୍ବବର୍ଗେ ଶୋକ-ପାରାବାରେ ।

କାର୍ଯ୍ୟଦକ୍ଷ ପ୍ରବୀଣ ସଂସାରୀ
ଅତୁଳ ସମ୍ପଦ-ଅଧିକାରୀ
ନିଜ ସୁଦୀର୍ଘ ଜୀବନେ          ଯାପିଣ ଅର୍ଥୋପାର୍ଜନେ
କେତେ ପ୍ରତିବାସୀ ଗଳା ଚିପିଲା ସେ ହେଳେ,
କି କଲା ସେ ପାପ ଧନ ତାର ଶେଷ ବେଳେ ?

ତେଜି ଦୁଃଖେ ରଙ୍କ ପ୍ରାଣଧନ,
ଲଭିଅଛି ବିଧ୍ୱଂସ କୃପଣ,
ସହିଣ ଉଦର କ୍ଲେଶ          ଧରିଣ ମଳିନ ବେଶ
ବହୁତ ସମ୍ପତ୍ତି ଯତ୍ନେ ସମ୍ପାଦି ସେ ଥିଲା,
ପ୍ରାଣ ଗଲାବେଳେ କିଛି ସଙ୍ଗେ ନ ଘେନିଲା ।

ସୁମଧ୍ୟମା ସୁବକ୍ଷା ନବୀନା,
ଅପାଙ୍ଗେ ପ୍ରଣୟୀ ଯାର କଣା,
କାହିଁ ଗୁରୁ ଲୋଳ ଭୂରୁ    କାହିଁ ତାର ପୀନ ଊରୁ
ତେଜ ଭୋଗ ତୃଷ୍ଣା କେଉଁ ବିଦେଶେ ଲୁଚିଛି
ତା ଚୂର୍ଣ୍ଣକୁନ୍ତଳ ଏଥି ପଡ଼ି ତ ରହିଛି ।

ସୁହାସିନୀ ନବୀନା-କାମିନୀ
ନବକାନ୍ତ-ପ୍ରାଣ-ପ୍ରଣୟିନୀ
ତେଜ ତା ମନ୍ଥର ଗତି    ଟହଟହ ହାସ୍ୟ ଅତି
ତେଜି ତା ନବସଂସାର ନେଇଛି ଆଶ୍ରୟ
ଏକା ଏ ନିର୍ଜନେ, କେହି ନାହାନ୍ତି ତା ସହ ।

ବିକଟାଳ ସ୍ଥଳ ଏ ଶ୍ମଶାନ,
ପଡ଼ିଅଛି ଶବ ଅସ୍ଥିମାନ,
ଘରେ ଚରଗୁଣୀମାନେ    ସେକନ୍ତି ନିଜ ସନ୍ତାନେ,
ବିକଟେ ଗୋମାୟୁଗଣ କରି ଅଟ୍ଟହାସ
କୁହାଟେ ଖୁଣନ୍ତି କେବେ ଶବ ସଡ଼ାମାଂସ ।

ଅତି ନିଗ୍ରୁଠିଆ ଏ ମଶାଣି,
ବିହରନ୍ତି ଭୂତ ଓ ଡାହାଣୀ,
ବୃକ୍ଷ କରେ ରଡ଼ମଡ଼,    ପକ୍ଷୀ ପକ୍ଷ ଧଡ଼ପଡ଼,
ବୃକ୍ଷେ ବସି ରାବେ କେବେ କାଉ 'କାଆ କାଆ',
ପ୍ରାଣୀକୁ ଶ୍ମଶାନ କିବା ଡାକେ 'ଆଆ ଆଆ' ।

ବୃଥା ଏ ପାର୍ଥିବ ଅଭିମାନ,
ଜାତି, କୁଳ, ଧନ, ଜନ, ମାନ,
ଜୀବନ-ଯୌବନ-ଗର୍ବ    ରାଜ୍ୟ, ବିଦ୍ୟା, ଯଶ ସର୍ବ
କାଳବଳେ ଏକାବେଳେ ଭଜନ୍ତି ବିଲୟ,
ଚରମ କାଳରେ କେହି ନ ଗମନ୍ତି ସହ ।

କହ ନଘା, କେଉଁଣ ଉଦ୍ଦେଶେ
କାହୁଁ ଆସୁ ଯାଉ କେଉଁ ଦେଶେ
ଆଦ ଅନ୍ତ ତୋର ମୋର ଘୋଟିଛି ଅନ୍ଧାର ଘୋର
ଜ୍ଞାନଜନେ ଦେଖିଛନ୍ତି ତୋର ଆଦ ଶେଷ,
କେ କହି ପାରିବ ନଘା ! ମୋହର ସନ୍ଦେଶ ?

□□□

# ସନ୍ତାନର ଉକ୍ତି

**ଦେଶପ୍ରାଣ ମଧୁସୂଦନ ଦାସ**

ମାଆ ମାଆ ବୋଲି କେତେ ମୁଁ ଖୋଜିଲି
ମାଆକୁ ପାଇଲି ନାହିଁ,
ଭାଇ ଭାଇ ବୋଲି କେତେ ମୁଁ ଡାକିଲି,
ନ ଦେଲେ ଉତ୍ତର କେହି । ୧ ।

ଖୋଜିଲି ଅରଣ୍ୟେ ଜନ-ସମାଜରେ
ଖୋଜିଲି ବାରିଧି ତଟ,
ସର୍ବତ୍ର ଦେଖିଲି ମାତା ପଦଚିହ୍ନ
ନହେଲା ମାତାର ଭେଟ । ୨ ।

ଭୁବନେଶ୍ୱରରେ ପଦଚିହ୍ନ ପରେ
ଲେଖା ଅଛି 'ରାଜରାଣୀ',
ନୀଳାଚଳ ଧାମେ ପୂଜା ହେଉଅଛି
ହିନ୍ଦୁ ଜାତି ମଥା-ମଣି । ୩ ।

ଶୁଣିଅଛି ଶାସ୍ତ୍ରେ ସତୀ ଅପମାନେ
ଧରା ହୁଏ ବିଦାରଣ,
ଅପମାନ ହେତୁ ସୀତା ଦେବୀଙ୍କର
ମହୀହୃଦେ ବାସସ୍ଥାନ । ୪ ।

ଅପମାନ ହେତୁ ଜନନୀ ମୋହର
ଉତ୍କଳ ଭୂମଧ୍ୟବାସୀ
ଉତ୍କଳର ମାଟି ପବିତ୍ର ହୋଇଛୁ
ସ୍ୱର୍ଗାଦପି ଗରୀୟସୀ । ୫ ।
ଜନନୀର ଦେଖା କରିବାରେ ଇଚ୍ଛା
ଯଦି ହୋଇଥାଏ ମନେ,
ଉତ୍କଳର ମାଟି ଆଲିଙ୍ଗନ କରି
ତା ଧୂଳି ଲେପ ବଦନେ । ୬ ।
ବୀର-ପ୍ରସବିନୀ କୋଟିସୁତ ମାତା
ପାଇବ କି ଦରଶନ ?
ମୋ ଭଳି ନିର୍ଗୁଣ ଧନ-ମାନ ହୀନ
ସନ୍ତାନ କଲେ ରୋଦନ । ୭ ।
କୋଟିଏ ସନ୍ତାନ ଗୋଟିଏ ସ୍ୱରରେ
'ଜନନୀ' 'ଜନନୀ' ଡାକ,
ତୃଷ୍ଣାରେ କାତର ଗଗନକୁ ଚାହିଁ
ଯେସନେ ଡାକେ ଚାତକ । ୮ ।
ଧନ-ମାନ ଜନ ଯାହା ଉପାର୍ଜନ
କରିଅଛ ଧରା ତଳେ,
ହରଷିତ ମନେ କରତବ୍ୟ ଜ୍ଞାନେ
ଆଣିଦିଅ ଯଜ୍ଞସ୍ଥଳେ । ୯ ।
ଜାତି-ପ୍ରେମ-ବହ୍ନି ପ୍ରଜ୍ୱଳିତ କରି
ସ୍ୱାର୍ଥକୁ ଦିଅ ଆହୁତି,
'ସ୍ୱାର୍ଥମେଧ ଯଜ୍ଞେ' ଚରିଆଡ଼େ ନାଚ
ଗୀତକୁ ମିଶାଇ ଗୀତ । ୧୦ ।
ଭୂମିକମ୍ପ ହେବ ଧରଣୀ ଫାଟିବ
ଉଠିବେ ସହସ୍ରଭୁଜା,
ସେହି ତୋର ମାତା ସେହି ତୋର ଧାତା
କର ସେହି ପଦପୂଜା । ୧୧ ।

□□□

# ରେଲ ଉପରେ ଚିଲିକା ଦର୍ଶନ

ଉତ୍କଳମଣି ଗୋପବନ୍ଧୁ ଦାସ

ରହ ରହ କ୍ଷଣେ ବାଷ୍ପୀୟ ଶକଟ,
ଦେଖିବି ଚିଲିକା ଚାରୁଚିତ୍ରପଟ ।
ଚିତ୍ରମଣେ ଯେଣୁ ନାହିଁ ଅନୁଭବ,
ବାସ୍ତବ ବିଶ୍ୱେ କି ଏ ଛବି ସମ୍ଭବ ?
ନୀଳ ବୀଚିମାଳା ଧୀରେ ଧୀରେ ଯାଏ,
ଲାଗଇ ସ୍ୱପନେ ଦେଖିଲି ପରାଏ ।
ସନ୍ତରନ୍ତି ବକ୍ଷେ ପକ୍ଷୀ ଦଳ ଦଳ,
ଓଲଟିଣ ତଳେ ଦିଶନ୍ତି ଯୁଗଳ ।
ଘୋର ନାଦେ ଯହୁଁ ଉଡିଲେ ସେ ନଭେ,
ଉଠେ ଶତ ଖଗ ଚିଲିକା-ଗରଭେ ।
ସତ୍ୟ ବୋଲି ମନେ ନହେଉ ପ୍ରତୀତ,
ପଲକେ ସେ ଦୃଶ୍ୟ ହୁଏ ତିରୋହିତ ।
ଦୂରେ ଘେନିଯାଏ ନିଦାରୁଣ ଯାନ,
ଆସେ ପୁଣି ତରୁ ଶିଳା ବ୍ୟବଧାନ ।
ନିମିଷେ ଲୁଚୁଏ ନିମିଷେ ଦେଖାଏ,
ସ୍ୱପ୍ନ ଲଭ୍ୟ ପ୍ରିୟ ପ୍ରତିମା ପରାଏ ।
କାହିଁ ଦିଶେ ନୀଳ କାହିଁ ସୁଶ୍ୟାମଳ,
କାହିଁ ବା ଧୂସର କାହିଁ ବା ଧବଳ ।
ନାନା ସ୍ଥାନେ ନାନା ରଙ୍ଗେ ଧରିକାୟା,
ପ୍ରକାଶି ଚିଲିକା ! କରୁ କେତେ ମାୟା ।
ଦେଖି ବୀଣାପାଣି ଶାଶ୍ୱତ ସେବକ,
କବି ରାଧାନାଥ ସୁଷମା-ଗ୍ରାହକ,

ଭ୍ରମି ବହୁ ସ୍ଥାନ ବିଶାଳ ଭାରତେ,
ନଦ-ନଦୀ-ମରୁ କାନନ-ପର୍ବତେ,
ଦେଖିଲେ ପ୍ରକୃତି ବିବିଧ ପ୍ରକାଶ
କିନ୍ତୁ ଶୋଭାଲୁବ୍ଧ ଶୁଦ୍ଧ ଅଭିଳାଷ ।
ସୁଖ-ଶାନ୍ତି-ପ୍ରୀତି ନାହିଁ ଏକାଧାରେ
ନ ପାଇଲେ ଯଥା ମିଳେ ତୋହଠାରେ ।
ଉତ୍କଳର ତୁହି ସୌନ୍ଦର୍ଯ୍ୟର ଖଣି,
ସାରସ୍ୱତ ନେତ୍ରେ ବାଛୁ ତହୁଁ ମଣି ।
ସୁଦକ୍ଷ ବିନ୍ଧାଣି ରଚି ଯେଉଁ ହାର
ଅର୍ପିଲେ ଉତ୍କଳ ଭାରତୀ ଗଳାର,
ଚିରଦିନ ତାହା ରହିବ ରୁଚିର,
ତା ଦେଖି ଭାବୁକେ ଲୋଡ଼ିବେ ତୋ ତୀର ।
ମୁଁ ଅଧମ ମୋର ଭାବୁକତା ନାହିଁ
ତଥାପି ଏ ପ୍ରାଣ କେ ଜାଣେ କପାଇଁ
ନିରନ୍ତର ଲୋଡ଼େ ସୌନ୍ଦର୍ଯ୍ୟ ବ୍ୟାକୁଳେ,
ତେଣୁ ଭାବିଥିଲି ଆସି ତୋର କୂଳେ,
ଦେଖିବି ତୋ ଶୋଭା ଦିନେ ନିକାଞ୍ଚନେ,
କର୍ମ-ବନ୍ଧେ ଥିଲି ମନ କଥା ମନେ,
ଏତେକାଳ ଅନ୍ତେ ପଡ଼ିଥିଲା ଯୋଗ,
ଆହା ସେ ସୁଯୋଗ ହେଲା ନାହିଁ ଭୋଗ ।
ରହିଣ ଜଞ୍ଜାଳ ବିଷମ ଜଗତେ,
ସଂସାରୀ ସୋଦର ବାନ୍ଧବ ସଙ୍ଗତେ ।
ଇଚ୍ଛାମତେ କାହୁଁ ଚଳିବ ବା ଜନ ?
ସମାଜେ ନିଜର ନୁହେଁ ନିଜ ମନ ।
ବସି କେତେଥର ନୀରବ ବିଜନେ
ଦେଖିଛି ତୋ ରୂପ କଳ୍ପନା-ନୟନେ ।
ତୋ ନୀଳ ତରଙ୍ଗେ ଖେଳେ ନିରନ୍ତର,
ଅନୁପମ ଦିବ୍ୟ ହିରଣ୍ମୟ-କର ।

ଗୃହୁଁ ଶଙ୍ଖରୂପ ତୋର ବକ୍ଷସ୍ଥଳେ,
ନାଚେ ଶତ ଶତ ମୋ କଳ୍ପନାବଳେ ।
କଳ୍ପନା ଚର୍ଚ୍ଚିତ ତୋ ସୁନ୍ଦର ତନୁ
କାଳେ କାଳେ ଆଉ ନ ଯିବ ମୋ ମନୁ ।
ଆଜ ଲୋ ଚିଲିକା ! କଳ୍ପନା ଦ୍ରଭବେ
ପୂରଇ ମୋ ମନ ଆହା କେତେ ଭବେ ।
ଅତୀତର ସୁଖ ସ୍ମୃତି ସମୁଚ୍ଚୟ,
ହର୍ଷ-ଖେଦେ କରେ ଆକୁଳ ହୃଦୟ ।
ତୋ ମଧୁର ନାମେ ରହିଛି ଜଡ଼ିତ,
ଗଉରବ ଯୁତ ଉତ୍କଳ-ଅତୀତ ।
କାହିଁ ଉତ୍କଳର ସେ ସୁକୃତ ରାଶି ?
ଯାହାର ପ୍ରଭବେ ପ୍ରଭୁ ବ୍ରହ୍ମରାଶି ।
ନିଜେ ନିରଞ୍ଜନ ଜଗତ-ଈଶ୍ୱର
ଧରିଣ ସୈନିକ ନର କଳେବର ।
ଉତ୍କଳର ଯଶ ପ୍ରତିଷ୍ଠା ରକ୍ଷଣେ
ବିନେ କଲେ ଘୋର ସମର-ପ୍ରାଙ୍ଗଣେ ।
କାହିଁ ସେ ସୌଭାଗ୍ୟ କାହିଁ ସେ ସୁକୃତ ?
ପବିତ୍ର ଉତ୍କଳ ଆହା କି ବିକୃତ !
ଆର୍ଯ୍ୟ ଧର୍ମକ୍ଷେତ୍ର ପୂତ ନୀଳାଚଳ
ହରାଇଛି ସବୁ କର୍ମ-ଧର୍ମ-ବଳ ।
ନାହିଁ ମୁଖେ ତେଣୁ ପୂର୍ବ ପୁଣ୍ୟକାନ୍ତି,
ହୃଦୟେ ସ୍ୱର୍ଗୀୟ ଧର୍ମ ଜାତ ଶାନ୍ତି ।
ଜୀବନେ ପବିତ୍ର ଉତ୍ସାହ ଶକତି,
ଉତ୍କଳର ଆହା କି ଘୋର ଦୁର୍ଗତି !
କାହିଁ ଗଲା ପୂର୍ବ ଓଡ଼ିଆ ବୋଇତ ?
କାହିଁ ସେ ନାବିକ ଉଦ୍ଦାମ ସଙ୍ଗୀତ ?
ଜଳପଥେ କାହିଁ ବିଦେଶ ଗମନ ?
କାହିଁ ପୂର୍ବ ଖ୍ୟାତି କାହିଁ ପୂର୍ବଧନ ?

କଥାରେ ରହିଛି ସବୁ ଆଜଯାଏ,
ସାଧବାଣୀ ବୋହୂ ବୋଇତ ବନ୍ଦାଏ ।
କଙ୍କଣତ ତୋର ଦୃଢ଼ ରମ୍ୟତଟ,
ଦୁର୍ଗମ ଶଇଳ ଅଭେଦ୍ୟ ଶଙ୍କଟ ।
ଖେଳାଉଥିଲେ ଯେ ଧରି ନିଜ ଦେହେ,
ଉତ୍କଳର କେତେ ବୀର ଶିଶୁ ସ୍ନେହେ ।
ଅଛି ସେହି ଗିରି, ଅଛି ସେ ବିପିନ,
ଅଛି ତୋର ଶିଳା ସୁଦୃଢ଼ ପୁଳିନ ।
କିନ୍ତୁ କାହିଁ ଆହା ଏବେ ସେ ବୀରତା,
ଓଡ଼ିଆ ଜାତିର ପୂର୍ବ ଜାଗ୍ରତତା ?

□□□

## ପ୍ରଭାତ ବର୍ଣ୍ଣନା

( ଖାରବେଳ )

ପଣ୍ଡିତ ନୀଳକଣ୍ଠ ଦାସ

ଫିଟି ଆସୁଅଛି ଗଗନେ ନବ ସିନ୍ଦୂର ବିଭା,
ଫୁଟିଉଠୁଅଛି ବିପିନେ ଶୁଭ୍ର ସଂକେତେ ଦିବା ।
ତରୁ-ଚୂଳ ଗୁଡ଼ ଅନ୍ଧାର ଲୁଚି ଯାଉଛି କାହିଁ,
ବାଲୁକା ବିତାନେ ପବନ ସୁଖେ ଯାଉଛି ବହି ।
କୂଟଜ ବିଭାସେ ଦୋଳଇ ବନ-ଧବଳ-ଶିଖା,
ଅନୁରାଗ-ରଙ୍ଗେ ଗୋଲାପି ହସି ଉଠେ କଳିକା ।
ଶାରଦ ଶିଶିର-ସ୍ଫଟିକ ବିନ୍ଦୁ ପଡ଼ଇ ଧୀରେ
ମୁକୁଳିତ ଫୁଲ ଦୋଳଇ ସ୍ୱଚ୍ଛ ଶିଶିର ଶିରେ ।
ଧୀରେ ବହଇ ସମୀରେ ପୁଷ୍ପ-ମୋହନ-ବାସ,
ଅନୁରାଗ ସେ କି ବିକାଶେ ଲଜ୍ଜା ଭେଦି ସୁହାସ ।

ସ୍ତବ୍ଧ ଆଉଁ ଉଠି ଭ୍ରମର ମଧୁ ଗୁଞ୍ଜନେ ବୁଲେ,
ବସିପଡ଼େ କେବେ ଭ୍ରମରେ ମୁଗ୍‌ଧ କଳିକା ଚୂଳେ ।
ମଥା ପୋଡ଼ଦିଏ କଳିକା ଭୃଙ୍ଗ ଢଳିପଡ଼ଇ,
ଉଡ଼ିଯାଏ ପୁଣି କ ରଙ୍ଗେ ପଡ଼ ନ ଛୁଇଁ ମହୀ ।
ଶ୍ୟାମ ତରୁ ଶାଖା ବ୍ୟଜନେ ଦେଲେ ସମୀର ସଙ୍ଗେ
ମୋହନ କୂଜନେ ପତଙ୍ଗୀ ଧୀରେ ଉଡ଼ଇ ରଙ୍ଗେ ।
କେଦାରେ କେଦାରେ ଫିଟିଛୁ ସ୍ୱର୍ଣ୍ଣ-ଶସ୍ୟବିତାନ,
ଦିଗନ୍ତ ବିସ୍ତାରେ ଉଜ୍ଜ୍ୱଳ ଦିଶେ ବିଶ୍ୱ ମୋହନ ।
ପୁଣ୍ୟ ଏ ବିଶାଳ ବିତାନ ଗୃହିଁ ରହିଛୁ ଆଜ,
ଶରଦ-ବିମଳ ମୁକୁରେ ଶୁଭ୍ର ଲପନ ମାଜ ।

□□□

## ନିଦାଘ ସରସୀ

ପଣ୍ଡିତ ଗୋଦାବରୀଶ ମିଶ୍ର

ଶୁଖିଛୁ ମୋ ସାରା ସୁନୀଳ ଜଳଧି
ଆତପେ ହୋଇଣ ଲୀନ,
ବିଲ ପଦା ମାଳେ ମିଶି ସେ ମୋ ତନୁ
କିବା ଆହା ହୀନମାନ !
ଜଳ-ଦର୍ପଣେ ମୁକ୍ତା ପ୍ରତିଫଳେ
ସମୀରେ ଖେଳାଇ ଶିର,
ରବି-ହେମକର- ଅଲକ୍ଷ୍ୟ-ପରଶେ
ବିସୋଷ ଜୀବନ ଭର ।
କମଳ-କଳିଟି ବିକଶୁ ଯେ ଥିଲା
ଅବମି ଗଗନ ମୋହି,
ଜୀବନ-ପ୍ରଭାତେ ଚିତା-ତଳପେ ତା
ମଉନେ ପଡ଼ିଛୁ ଶୋଇ ।

ବାଟର ବାଟୋଇ ବାଟେ ଚାଲିଯାଏ
ଉଦାସ ଚରଣେ ଆଜି
ନିମିଷେ କି ଚିତ୍ତେ ଭୁଲେ ମୋ ବିଗତ
ସୌହାର୍ଦ୍ଦ-ସମ୍ପଦରାଜି ?
କି ଅଛି ମୋର ଯେ ପଖାଳି ଦେବ ତା
ଧୂଳି-ବିଲେପିତ ପାଦ ।
ମୋ ସୁଧା-କଣିକା ଅରପି ହରିବ
ମନୁ ମନ-ଅବସାଦ ?
ନିଶି-ଶଶୀ ସ୍ମିତେ ହସନ୍ତେ ଯା କୋଳେ
ବଦନ ରଜତ ହାସେ,
କୋଟି କଇଁ-କଳି, ତା ତନୁ ପୂଛିର
ବନ କଣ୍ଟା ବୁଦା ଘାସେ ।
ଯେତେ ମୋ ସମ୍ପଦ ସରିଛି ସକଳ
ଋତୁ ଆବର୍ତ୍ତନେ ବୁଲି,
ଦୀନହୀନ ବେଶେ ଦିବା-ନିଶି ନିତି
ପଡ଼ି ମୁଁ ହେଉଛି ଘାରି ।
ଜଳବେଣୀ-ବକ୍ଷେ ସନ୍ତରନ୍ତେ ସୁଖେ
କେତେ ଜଳଚର ଯହିଁ,
ଶୃଗାଳ କୁକ୍କୁର ବିକଟ ନିନାଦେ
ବୁଲନ୍ତି କ୍ଷୁଧାର୍ତ୍ତ ହୋଇ ।
ଆଜି କପାଁ ନଭେ ନବୀନ ଜଳଦ,
ଢାଳୁଛି ସଲିଳ ଧାର;
ନିଠୁର ସେନେହେ ଛିଞ୍ଚାଉଛି ମିଛେ
ଏ ତନୁ-ତାପିତ ଖରା ?
ଅଧେ ମୁଁ ଜଳିଛି ଯେ ଗ୍ରୀଷ୍ମ ଆତପେ,
ପୂରା ହିଁ ଜଳିବ ତହିଁ;
ଘନ ବାରି ଧାରା, ତଟିନୀ ସୁହାଗେ
ଆଜି ତ ଭୁଲିବ ନାହିଁ ।

ଗିରିଶିଳା-ଶିରେ ବରଷ ହରଷେ,
ସାଗର-ସିକତା-ଶେଯେ,
ମୋ ଭଳି ସହସ୍ର ନରେଖ ଆଶ୍ରିତେ
ବୁଡ଼ାଇ ବିଷାଦ-ଲୁଜେ ।

□□□

# ବନ୍ଦେ ଉତ୍କଳ-ଜନନୀ

**କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର**

ବନ୍ଦେ ଉତ୍କଳ-ଜନନୀ
ଚାରୁହାସମୟୀ ଚାରୁ ଭାଷମୟୀ
ଜନନୀ, ଜନନୀ, ଜନନୀ···ଘୋଷା ।

ପୂତପୟୋଧି-ବିଧୌତ-ଶରୀରା
ତାଳ-ତମାଳ-ସୁଶୋଭିତ-ତୀରା
ଶୁଭ୍ର-ତଟିନୀ-କୂଳ-ଶୀକର-ସମୀରା
ଜନନୀ, ଜନନୀ, ଜନନୀ । ୧ ।

ଘନ-ଘନ-ବନ-ଭୂମି ରାଜିତ ଅଙ୍ଗେ
ନୀଳ-ଭୂଧର-ମାଳା ସାଜେ ତରଙ୍ଗେ,
କଳ-କଳ-ମୁଖରିତ ଚାରୁ ବିହଙ୍ଗେ
ଜନନୀ, ଜନନୀ, ଜନନୀ । ୨ ।

ସୁନ୍ଦର-ଶାଳି-ସୁଶୋଭିତ-କ୍ଷେତ୍ରା
ଜ୍ଞାନ ବିଜ୍ଞାନ-ପ୍ରଦର୍ଶିତ-ନେତ୍ରା
ଯୋଗିଋଷିଗଣ-ଉଟଜ-ପବିତ୍ରା
ଜନନୀ, ଜନନୀ, ଜନନୀ । ୩ ।

ସୁନ୍ଦର-ମନ୍ଦର-ମଣ୍ଡିତ-ଦେଶା
ଚାରୁ-କଳାବଳୀ-ଶୋଭିତ-ବେଶା
ପୁଣ୍ୟ-ତୀର୍ଥଚୟ-ପୂର୍ଣ୍ଣ-ପ୍ରଦେଶା
ଜନନୀ, ଜନନୀ, ଜନନୀ । ୪ ।

ଉତ୍କଳ ଶୂରବର-ଦର୍ପିତ-ଗେହା
ଅରିକୁଳ-ଶୋଣିତ-ଚର୍ଚ୍ଚିତ-ଦେହା
ବିଶ୍ୱ ଭୂମଣ୍ଡଳ-କୃତବର-ସ୍ନେହା
ଜନନୀ, ଜନନୀ, ଜନନୀ । ୫ ।

କବିକୁଳ ମୌଳି-ସୁନନ୍ଦନ-ବନ୍ଦ୍ୟା
ଭୁବନ-ବିଘୋଷିତ-କୀର୍ତ୍ତି-ଅନିନ୍ଦ୍ୟା,
ଧନ୍ୟେ, ପୁଣ୍ୟେ, ଚିରଶରଣ୍ୟେ !
ଜନନୀ, ଜନନୀ, ଜନନୀ । ୬ ।

□□□

## ଧଉଳୀ ପାହାଡ଼

ପଦ୍ମଚରଣ ପଟ୍ଟନାୟକ

( ୧ )

ଧଉଳି ପାହାଡ଼, ଧଉଳି ପାହାଡ଼
କାହିଁକି ମଉନେ ରହିଛ ଆଜ,
ଦଇଆ ବାଲିରେ କେତେ ଖୋଜୁଥିବ
ଅତୀତ ଗୌରବ-ଗରବ ରାଜ ।
ଧଉଳି ପାହାଡ଼, ଧଉଳି ପାହାଡ଼
ରୁକ୍ଷ ମୁଖ ଦୁଃଖ ଗୁଳ୍ମେ ଆବରି,
ତପସ୍ୱୀ ପରାଏ ବସିରହିଅଛ
କି ଭାବନା ଭାବି ଦିବା ଶର୍ବରୀ ।

ଧଉଳି ପାହାଡ଼, ଧଉଳି ପାହାଡ଼
ଲଜ୍ଜା ଦୁଃଖ ଛେଡ଼ି ଟେକ ହେ ମଥା,
ଶୁଣାଅ ସେକାଳ ଗୌରବ କାହାଣୀ
କହ ହେ ସେକାଳ ଗରବ କଥା ।

ଧଉଳି ପାହାଡ଼ ଧଉଳି ପାହାଡ଼
ଅଶୋକ ରାଜନ ରହିଲେ କାହିଁ ?
କାହିଁ ସେହି ଧର୍ମ କାହିଁ ବା ସେ କର୍ମ
ତଳେ କି ଏକାଳେ ମିଳିବ ନାହିଁ !

( ୨ )

ଧଉଳି ପାହାଡ଼, ଧଉଳି ପାହାଡ଼
ଶୋଭେ ତବ ଶିରେ ଗୌରବ ଟୀକା,
ଗୁରୁପରି ନିଜେ ନୃପତି ତନୟେ
ଶିଖାଇଛ ଧର୍ମ ଦେଇଛ ଦୀକ୍ଷା ।

କଳ୍ପନାରେ ପ୍ରତେ ହୁଏ କାଳପରି
ଆସିଲେ ଉତ୍ତରୁ ସହସ୍ର ବୀର,
ରଣମଦେ ସର୍ବେ ଶ୍ୱାପଦ ସମାନ
ଜାଣନ୍ତି କପରି କାଟିବେ ଶିର ।

ଯହିଁ ବାଟ କାଟି ଆସିଲେ ବହିଲା
ରକ୍ତ ସ୍ରୋତ ଆଗେ ସଙ୍କେତ ପରି,
ଯହିଁ ଗଲେ ତହିଁ ଖୋଜିଲେ କପରି
ଅସି ମୁନେ ବେଗେ ନାଶିବେ ଅରି ।

ପିଇ ପିଇ ରକ୍ତ ତୃଷା ନ ମେଣ୍ଟିଲା
ମହାନଦୀ ତୀରେ ପଶିଲେ ଆସି,
ପରଶିଲା କ୍ଷଣି ମହାନଦୀ ଜଳ
କରୁଁ କରବାଳ ପଡ଼ିଲା ଖସି ।

ଥର ଥର କର ଶତ୍ରୁଥର ଅସି
ଧରିଲେ ଖସିଲା ଭୂତଳେ ଖରେ,
ଏ କି ଅଦଭୂତ କଥା ଭାବି ଭାବି
ଚକିତେ ସମ୍ମୁଖେ ଗୁହାଁଲେ ବୀରେ ।
ପର୍ବତ ପ୍ରମାଣେ ଦାଉ ଦାଉ ହୋଇ
ଦୂରରେ ଦିଶିଲା ରକ୍ତ ଅନଳ,
ମନେ ମନେ ବୀରେ ପ୍ରମାଦ ଗଣିଲେ
ଜାଣିଲେ ଏଥର ସରିଲା ବଳ ।
କରଯୋଡ଼ି ବୀରେ ନୃପତି ସମ୍ମୁଖେ
ଜଣାଇଲେ 'ନାଥ, ନ ଯିବା ଆଉ,
ଦେବଲୀଳା ଭୂମି ଏ କଳିଙ୍ଗ ଭୂମି
ବୋଲୁଛନ୍ତି ଲୋକେ ଏ ଦେଶ ଥାଉ ।'
ଦର୍ପେ ପଶୁ ପରି ଭାଷିଲେ ନୃପତି
କାହିଁ କେଉଁଠାରେ ନାହିଁ ଦେବତା,
ଦେବତାର ଭୟ ଭୀରୁର ସମ୍ବଳ
ହୀନ ଦୁର୍ବଳର ପ୍ରାଣର କଥା ।
ଅସି ମୋ ଦେବତା ସବୁ ସାଧିବାକୁ
ଏଥିରୁ ବା ବଡ଼ି କି ଅଛି ଆଉ ?
ଶୁଣିଛି କଳିଙ୍ଗ ବୀରଭୂମି ବୋଲି
ଜିଣିବି ଗଲେ ମୋ ଜୀବନ ଯାଉ ।
ଉଠ ଉଠ ବୀରେ ତେଜ ହେ ବିଷାଦ
ହେଜ ହେ ଅତୀତ ଗୌରବ କଥା,
କେତେ କଉଶଳେ ଜିଣିଛ ଯେ ଦେଶ
କରିବା କଳିଙ୍ଗ ସେ ଦେଶ ମଥା ।
ଚିର ସାହସିକ କଳିଙ୍ଗ ତନୟେ
ହସି ଶତ୍ରୁ ସଙ୍ଗେ କଷିଲେ ବଳ,
କେତେ କାହିଁ ଶବ ପଡ଼ି ପଡ଼ି ଗଲେ
ଅରୁଣ ଦିଶିଲା ଦୟା ଜଳ ।

ବିଜୟ ଉଲ୍ଲାସେ ଅଶୋକ ରାଜନ
ଗଣୁଥିଲେ ବସି ଶତ୍ରୁଙ୍କ ମଥା,
ଧଉଳି ପାହାଡ଼ ଗୁନ ଗୁନ କରି
କିବା ତାଙ୍କ କାନେ କହିଲ କଥା ?

( ୩ )

ଧଉଳି ପାହାଡ଼, ଧଉଳି ପାହାଡ଼
କି କଥା କହିଲ ରାଜାଙ୍କ କାନେ;
କି ଗାଥା ଗାଇଲ ଘଡ଼ିକେ ରାଜନ
ବୁଡ଼ିଲେ ଅପୂର୍ବ ସମାଧି ଧ୍ୟାନେ ।

ରଣୋନ୍ମାଦେ ମାତି ବିଜୟ ଉଲ୍ଲାସେ
ଗଡ଼ୁଥିଲେ ତବ ଚରଣ ତଳେ,
ଗଢ଼ୁଥିଲେ କେତେ ଆଶାର ସଉଧ,
କାହିଁକି ଭାସିଲେ ନୟନ ଜଳେ ?

ଧ୍ୟାନ ଭଙ୍ଗେ କ୍ଷଣେ ଗୃହିଁଲେ ଚକିତେ
ତବ ଶିରେ, ପୁଣି ପୋତିଲେ ମଥା,
କି କଲି ! କି କଲି ! କହିଲେ ବିକଳେ
ଲଭିଲେ ବା ପ୍ରାଣେ ଦାରୁଣ ବ୍ୟଥା ।

'କି କଲି, କି କଲି, କାହୁଁ ଆସି କାହିଁ
ପଡ଼ିଲି କି ଘୋର ଜିଗୀଷା-ଜାଲେ !
'କିବା କଥା ଲାଗି' ଏ ସବୁ ବିହିଲି,
ଲେଖିଲା କି ବିଧି ଏ ଦଶା ଭାଲେ ।

ଶୋଣିତର ସ୍ରୋତ ନିଜେ ବୁହାଇଲି,
କେମନ ଏ ଶୋକ ନିଭିବ ମୋର,
ଆଗେ ଆଗେ ମୋର ଜଳାଇ ବସିଲି,
ଜୀବନାଶୀ ଚିତା ଭୀଷଣ ଘୋର ।

କେତେ ପ୍ରାଣୀ ହେଲେ ନାଶିଲ ଏ କରେ
କେତେ ଦେଶ କଲ ଶ୍ମଶାନମୟ,
କେତେ ସୁଖ ସୌଧେ ଜାଳଛୁ ଅନଳ
କେତେ ପ୍ରାଣେ ମୁହିଁ ଆଣିଛୁ ଭୟ ।
କି ପିପାସା ଘେନି ଲଭିଲ ଜନମ
କାଳେ କାଳେ ତାର ନ ହେଲା ଶାନ୍ତ,
ସାରା ଜୀବନଟା ଆବୋରି ବସିଲା
କି ଅସାର ଆଶା ମଧୁର ଭ୍ରାନ୍ତ ।
ଲୁବ୍‌ଧ ମୃଗ ପରି ମୁଗ୍‌ଧ ହୋଇ ମୁହିଁ
ଇନ୍ଦ୍ରପୁର ସୁଖେ କାଟିଲି କାଳ
ଜ୍ୱଳନ୍ତ ଅନଳେ ଇନ୍ଧନ ଯୋଗାଇ
ପାପେ ପୂର୍ଣ୍ଣ କଲି ଏହି ସଂସାର ।
'ଧୂମକେତୁ' ପରି ଧୂମ ପୁଚ୍ଛଧର
ବୁଣିଲି ମଣ୍ଡଳ ଯାତନା ରାଜ,
ଲୋକ-ଅଶ୍ରୁ-ରକ୍ତ ସ୍ରୋତେ ଭାସି ଭାସି
ଏ ଗିରି ଚରଣେ ଆସିଛୁ ଆଜ ।
'ଏ ଗିରି ଚରଣେ ଏହି ନଦୀ କୂଳେ
ଲଭିଲଣି ଆଜ ପରମ ଶିକ୍ଷା,
ଏ କଳିଙ୍ଗ ଦେଶ ହେଲେ ମୋର ଗୁରୁ
ଘେନିବି ଏଥି ମୋ ଜୀବନ ଦୀକ୍ଷା ।'
ଏହି ଦେଶେ ବସି ଏହି ନଦୀକୂଳେ
ଫେରାଇବି ମୋର ଜୀବନ ଗତି,
ସାକ୍ଷୀ ରହ ମୋର ସର୍ବ ଦିଗପାଳ
ସାକ୍ଷୀ ରହ ମୋର ଜୀବନ ପତି ।
ଶୁଭ ଯୋଗେ ସତ କଳିଙ୍ଗ ବିଜୟେ
ବଳିଲା ମୋ ମନ ଟଳିଲା ବଳ,
ଦେବ ଦେଶେ ଆସି ଦେବ ଅନୁଗ୍ରହେ
ଭୋଗିଲି ଏ କେଉଁ ତପସ୍ୟା ଫଳ ।

ଏହି ତପ ଫଳ ଏହି ଧର୍ମ ବଳ
ଜୀବନର ମୋର ହେଉ ଭୂଷଣ,
ସେହି ବଳେ ପ୍ରଭୁ ଘୁଞ୍ଚାଇ ଦଅ ହେ
ଲକ୍ଷ ଲକ୍ଷ ପ୍ରାଣୀ ପ୍ରାଣ କଷଣ ।

× × × □□□

## ଉଠ କଙ୍କାଳ

ଗୋଦାବରୀଶ ମହାପାତ୍ର

ଦୁର୍ଗମ-ଗିରି-ଦୁର୍ଗ-ପ୍ରାଚୀର ଜୀର୍ଣ୍ଣ ଦୁଆରେ ବସି,
ଡାକେ ତାନ୍ତ୍ରିକ ମନ୍ତ୍ର ସାଧନେ ଜାଗ୍ରତ ପୁରବାସୀ !
ପୃଥ୍ୱୀ ବିଦାର ବାରବାଟୀ ମଡ଼ା ଉଠ ଉଠ ଚଞ୍ଚଳ,
ଖୋରଧାର ଶତ ସରଦାର ଶିର କର ଉନ୍ନତତର !
ଉଠ କଙ୍କାଳ, ଛିଡ଼ୁ ଶୃଙ୍ଖଳ, ଜାଗ ଦୁର୍ବଳ ଆଜି !
ଉଠୁ ଗତ ଗୌରବ, ହୃତ ଗୌରବ, ମୃତ ଗୌରବ ରାଜି ।

ମେଘାସନ ତଳ ମନ୍ଦ୍ର ନିନାଦ ବାଜେ ଫୁଲଝର ବୁକେ,
ରାଇବଣିଆର ରଣ ସଙ୍ଗୀତ ଗଞ୍ଜାମ ପଥେ ଡାକେ ।
ସିଂଭୂମି କହେ ମରଣ ଦୁଆରେ ବିଶାଖାପାଟଣେ ରହିଁ
ସନ୍ତାନ ମୁଖେ, ଶମଶାନ ବୁକେ ପ୍ରାଣ ସଙ୍କେତ ନାହିଁ ।
ଉଠ ଦୁର୍ବଳ, ଜାଗ କଙ୍କାଳ, ଛିଡ଼ୁ ଶୃଙ୍ଖଳ ଆଜି
ଉଠୁ ଗତ ଗୌରବ, ହୃତ ଗୌରବ, ମୃତ ଗୌରବ ରାଜି ।

ଚିର-ବନ୍ଦିତା ବନ୍ଦମାତା ମାଆ ବନ୍ଧନ ଫେଇବାରେ,
ସମ୍ବଲପୁର ସମ୍ବଲବୀର ଦମ୍ଭ କି ନାହିଁ ଧରେ ?
ଗଙ୍ଗା ଧୋଇଲା ଚକୁର ଯାହାର, କୃଷ୍ଣା ଚରଣ ତଳ
ଶମଶାନ ଆଜ ମଡ଼ାଦେଶ ଆଜି, ଏହି ସେହି ଉତ୍କଳ ।

ଜାଗ ଦୁର୍ବଳ, ଛିଡ଼ୁ ଶୃଙ୍ଖଳ, ଉଠ କଙ୍କାଳ ଆଜି,
ଉଠୁ ଗତ ଗୌରବ, ହୃତ ଗୌରବ, ମୃତ ଗୌରବ ରାଜି ।

ନିଜାମ ଭୁବନେ କୁଳବର୍ଗର ଅର୍ଗଳ ଏଡ଼ି ବନେ
ଗଜପତି ବୀର 'ବେଦର' ଭେଦିଲା ଜୟ ଗୌରବ ଗାନେ ।
ଦୁର୍ବାର ଗଡ଼, 'ଦେବର କୋଣ୍ଡା' କହେ ଆଜି ସେହି କଥା
ବାରବାଟୀ ବୀର ଦେଇଥିଲା ତାର ରଣେ ଉନ୍ନତ ମଥା ।

ଛିଡ଼ୁ ଶୃଙ୍ଖଳ, ଜାଗ କଙ୍କାଳ, ଉଠ ଦୁର୍ବାର ଆଜି,
ଉଠୁ ଗତ ଗୌରବ, ହୃତ ଗୌରବ, ମୃତ ଗୌରବ ରାଜି ।

ଖଣ୍ଡାକୁଶଳ ଖଣ୍ଡାୟତର ଦୁର୍ବାର କରବାଳେ
ଅଜେୟ ବଙ୍ଗ-ବାହିନୀ ଶୋଇଲେ 'ଶତଗଡ଼' ପ୍ରାନ୍ତରେ,
ଗଉଡ଼ ଭୁବନ ହେଲା ପଦାନତ ମଗଧ ପାଇଲା ଲୀନ,
ପ୍ରତାପୀ ପୁଷ୍ପମିତ୍ର ହଟିଲା ଦେଇ ଉତ୍କଳେ ରଣ ।

ଜାଗ କଙ୍କାଳ, ଜାଗ କଙ୍କାଳ, ଜାଗ କଙ୍କାଳ ଆଜି
ଉଠ୍ ଗତ ଗୌରବ, ହୃତ ଗୌରବ, ମୃତ ଗୌରବ ରାଜି ।

କଥା କହ କଥା କହ କଙ୍କାଳ ! ସେ କେତେ ଯୁଗର କଥା,
ହିମାଚଳ ତଳେ ଟେକିଥିଲା ଯେବେ ଏ ଜାତିର ବୀର ମଥା ।
ବିଜୟୀ 'ବିଜୟ ନଗର' ମାଗିଲା ଶରଣ ଚରଣ ତଳେ,
'ବାହାମନୀ' ପତି ଯବନ, ଶମନ କାତରେ ଲୁଚିଲା ଘରେ ।

ଉଠ କଙ୍କାଳ, ଉଠ ଦୁର୍ବଳ, ଛିଡ଼ୁ ଶୃଙ୍ଖଳ ଆଜି
ଉଠୁ ଗତ ଗୌରବ, ହୃତ ଗୌରବ, ମୃତ ଗୌରବ ରାଜି ।

ହାଡ଼ ପାଶୁ ଆଜ ଭିଷା ବହ୍ନି ଆସୁ, ଫୁଟୁ ମଡ଼ା ମୁଖେ ହସ,
ଭଗ୍ନ ଏ ଗଡ଼ ମନ୍ଦିରେ ଶୁଭୁ ଦୁନ୍ଦୁଭି ଅହର୍ନିଶ ।
ଶମଶାନ ଧୂଳି ଅଞ୍ଜଳି ଭରି ନିଅ ପୁରବାସୀ ଜନ,
ଲକ୍ଷ ଜୀବନ ସାକ୍ଷ୍ୟ ଦେବ ସେ ଗୌରବେ ମହାସ୍ଥାନ ।

ଉଠ କଙ୍କାଳ, ଭେଦ ମହାକାଳ, ଜାଗ ଦୁର୍ବଳ ଆଜ
ଉଠୁ ଗତ ଗୌରବ, ହୃତ ଗୌରବ, ମୃତ ଗୌରବ ରାଜ ।

ବେଳ ନାହିଁ, ବେଳ ନାହିଁ, କଙ୍କାଳ ! ଟେକ ଚଞ୍ଚଳ ମଥା
ବିଦାରି ଉଠଲ ନର୍ମିଳ ନବ ପିଞ୍ଜରୁ ଉଠୁ ବ୍ୟଥା,
ବାଜଉଠୁ ବାରେ ମରଣ-ବିଜୟୀ ବଂଶୀ ସେ ବୁକୁତଳେ,
ଧୂର୍ଜଟି ଜଟାଜୁଟ କମ୍ପାଇ ଯୌବନ କୁତୁହଳେ ।

ଉଠ କଙ୍କାଳ, ଉଠ ଦୁର୍ବଳ, ଜାଗ କଙ୍କାଳ ଆଜ
ଉଠୁ ଗତ ଗୌରବ, ହୃତ ଗୌରବ, ମୃତ ଗୌରବ ରାଜ ।

□□□

## ଅଭିଶପ୍ତର ଅଭିମାନ

**କୁନ୍ତଳାକୁମାରୀ ସାବତ**

[ ୧ ]

ଜାଣେଁ ଏ ଜୀବନ କେଉଁ ନ ହେବ ବିଫଳ,
ଅକାରଣ ନୁହେଁ ମୋର ଉଷ୍ଣ ଅଶ୍ରୁଜଳ;
ନିବିଡ଼ ନିଷ୍ଠୁର ଘନ ଗହନ ଅନ୍ଧାରେ
ନ ମରିବ ଚିରଦିନ ତୀବ୍ର ହାହାକାରେ
ଅମିୟ ଅରୁଣ ଭାତି
ବିନାଶିବ ଚିର ରାତି
ଅମୃତ ଆନନ୍ଦେ ମୁହିଁ ଅନନ୍ତ ଜୀବନେ
ଜାଗିବି ଜାଗିବି, ଉପ୍ତ ଆଶା ମୋର ମନେ ।

[ ୨ ]

ଦୁର୍ବଳ କୋମଳ ମୁହିଁ ମଳିନ ଅଧମ,
କୋଟି କର୍ତ୍ତବ୍ୟ ପାଳନେ ସତତ ଅକ୍ଷମ,
ଶତ ଶତ ଭୁଲ ଭ୍ରାନ୍ତ
ଦାରୁଣ ଦୂଷଣ ଶ୍ରାନ୍ତ
ଘେରିଛି ଜୀବନ ମୋର ସହସ୍ର ଜଞ୍ଜାଳ
ତଥାପି ନୁହେଁ ମୁଁ ସଖା ମୃତ୍ତିକା କଙ୍କାଳ;
ଅମୃତ ସନ୍ତାନ ମୁହିଁ ସୁଧା ଅଧିକାରୀ
ଅନନ୍ତ ତିମିର ତଳେ ଦୀପ୍ତ ଦୀପଧାରୀ ।

[ ୩ ]

ଲାଞ୍ଛନା ଗଞ୍ଜନା ଶତ ଭର୍ତ୍ସନା ଜୀବନେ
ପଦେ ପଦେ ଅପମାନ ପୀଡ଼ଇ ମରମେ
ତୀକ୍ଷ୍ଣ ଶେଳ ଶିଳା ଅବା କଠିନ କୁଳିଶ
ପ୍ରହାରେ ଜର୍ଜ୍ଜର ହୁଅ, ଜୀବନ ମୋ ଏବଷ;
ତଥାପି ଅମର ମୁହିଁ ମାନବ ସନ୍ତାନ
ବ୍ୟର୍ଥେ ଏ ପୃଥିବୀ ମୋତେ ନ କଲା ଆହ୍ୱାନ ।
ତିଳେ ତିଳେ ଏ ଜୀବନ
କରିବଟି ନିବେଦନ
ସାରା ସୃଷ୍ଟି ସାର ମୁହିଁ ପ୍ରଚ୍ଛନ୍ନ ଦେବତା
କରମ କରତା ମୁହିଁ ମୋ ଭାଗ୍ୟନିୟନ୍ତା ।

[ ୪ ]

କରୁଛ କି ପରିହାସ ଦେଖି ହୀନ ବେଶ,
ଅର୍ଦ୍ଧ ଅନଶନେ କ୍ଷୁଦ୍ର କୁଟୀରେ ମୋ କ୍ଲେଶ ?
ତପତ ତପନ ତଳେ ତିକ୍ତ ସ୍ୱେଦଜଳେ
ରୁକ୍ଷ ବକ୍ଷ ଧରା ମୁହିଁ ଚଷଇ ଲଙ୍ଗଳେ;

ଅବା ଭିକ୍ଷାପାତ୍ର ଧରି
ସରମେ ମରମେ ସରି
ତବ ରମ୍ୟ ହର୍ମ୍ମ୍ୟ ତୋଗ୍ର ତୋରଣ ସମ୍ମୁଖେ
କ୍ଲାନ୍ତ ପଦକ୍ଷେପେ ଆସେ, ନ ଗୃହୁଁ ଛ ମୁଖେ ।

[ ୫ ]

ଲଜେ ପୋତି ମଥା ଦୂରେ ଯାଅ ମୋର ଭାଇ
ନ ଚହ୍ନ ନ ଚହ୍ନ ମୋତେ ନ ହେବ ବଥାଇ ।
ତିଳେ ତିଳେ ପ୍ରାଣ ମୋର କରିବ ଅର୍ପଣ
ତବ ଶତ ସୁଖ ଯହିଁ ହେବଟି ବର୍ଦ୍ଧନ ।
ବଞ୍ଚିବାର ଅଧିକାର ରଖି ଚିରଦିନ
ମରଣେ ସମ୍ବଳ କରି ହେଉଥାଏ କ୍ଷୀଣ ।
ତଥାପି ମରିବ ନାହିଁ
ମନେରଖ ଏହା ଭାଇ,
ଅକାରଣେ ଜନ୍ମ ମୋର ନ ହେଲା ଭୂତଳେ,
ଅନନ୍ତ ବିନାଶ ଯେନ ମରିବି ବିରଳେ ।
ଅନନ୍ତ ବିକାଶ ମମ
ଚିରଦିନ ଅନୁପମ
କଷଣ-କର୍ଦ୍ଦମେ ପଦ୍ମ ମୁହିଁ ଶତଦଳ,
ନ ହେବ ବିଫଳ ମୋର ତପ୍ତ ନେତ୍ରଜଳ ।

# ପାସୋରଦେଲରେ ଶିମୁଳିପାଳ !

କାଳନ୍ଦୀଚରଣ ପାଣିଗ୍ରାହୀ

ଭୁଲିଗଲି ମୋର ଶ୍ରେଷ୍ଠ ଘରଟିର ପୁରୁଣା ମାଟି
ଦୂର ଦିଗନ୍ତ ଧାନ କ୍ଷେତେ କେତେ ଖେଳିଛୁ ଖେଳ
ମାନ ନାହିଁ ଖରା ବରଷା ପବନ ପିଚ୍ଛିଳ ବାଟ

ଶଇଶବ ପ୍ରିୟ ବନ୍ଧନ ସବୁ ଆସିଲି କାଟି
ଦୂର ଗାଆଁ କୋଳେ ବୁଡ଼ୁଥିଲା ମୋର ଗୋଧୂଳି ବେଳ
ଶିଶୁ ସାଥୀ ମେଳେ ବସୁଥିଲା କେତେ ସୁଖର ହାଟ ।
କେତେ ପ୍ରିୟ ସ୍ମୃତି ଅନୁଭୂତିମୟ ଅତୀତ କାଳ
ତୋତେ ଗୃହିଁ ଆଜ ପାସୋରଦେଲରେ ଶିମୁଳିପାଳ ! (୧)

ଶୀତର ସକାଳେ ଆସୁଥିଲା ଯେବେ କୁହୁଡ଼ି ଘୋଟି
ଧଳା ପରଦାଟି ପକାଇ ଅଦୂର ପୁନାଗ ବନେ
କନକ ଅଧରେ ହସି ଦେଇ ରବି ଉଠଇ ଉଇଁ

ନୂଆ ବୋହୂ ସମ ଲୁଚିଯାଏ କାହିଁ କୁହୁଡ଼ି ହଟି
ହଜିଗଲା କଥା ଗୋଟି ଗୋଟି ଯେତେ ପଡ଼ଇ ମନେ
ବିମୁଖ ପ୍ରଣୟୀ ପରିଏ ଯାହାକୁ ଛାଡ଼ିଲି ମୁହିଁ
କେତେ ପ୍ରିୟ ସ୍ମୃତି ଅନୁଭୂତିମୟ ଅତୀତ କାଳ
ତୋତେ ଗୃହିଁ ଆଜ ପାସୋରଦେଲରେ ଶିମୁଳିପାଳ ! (୨)

ମୋ ପ୍ରିୟ ସାଗର ତୀରେ ନିରେଖିଛି ସୁଦୂର ପଥେ
କେତେରେ ବିଳାପ କେତେ ହସ ଖେଳ ବାଲୁକା-ଚରେ
ସାକ୍ଷୀ ତାହାର ଏ ନୀଳ ଆକାଶେ ଶୁକ୍ର ତାରା

କରୁଣ ବେଦନା ଲୁଚୁଇ ଗୁହୁଁଛୁ ମରମତଟେ
ଲହରୀ-ଆଘାତ ସଘନେ ବାଜ ଏ ପରାଣ ପଟେ
ଫିଟାଇ ଦେଇଛୁ କଣ୍ଠୁ ମୋହର ଗୀତର ଧାର !
ସବୁ ପ୍ରିୟ ସ୍ମୃତି ଅନୁଭୂତିମୟ ଅତୀତ କାଳ
ତୋତେ ଗୁହୁଁ ଆଜ ପାସୋର ଦେଲରେ ଶିମୂଳପାଳ ! (୩)

ମହାନଦୀ ପରେ ଅଶିଣ ଗୋଧୂଳ ଯାଇଛୁ ବୁଡ
ଆର ପାରେ ଉଡ଼ ଯାଏ ଅଗଣନ ବାଦୁଡ଼କୁଳ
ନାଉରୀ କୁହାଟେ ଚେତନା ଜାଗିଲ ଚକିତ କବ

ପଠା କାଶବନେ ନରେଖି ରଚଲ ତରୁଣ ଗୀତ
ଦୂର ପାହାଡ଼ରେ କେତେ କଳାମେଳ ହୋଇଲ ଠୁଳ
ମହାନଦୀ ତୀରେ ଫୁଟି ଉଠେ ନିତ ନୂତନ ଛବ !
ସବୁ ପ୍ରିୟ ସ୍ମୃତି ଅନୁଭୂତିମୟ ଅତୀତକାଳ
ତୋତେ ଗୁହୁଁ ଆଜ ପାସୋରଦେଲରେ ଶିମୂଳପାଳ । (୪)

କ ଗୀତ ତୋ ଆଗେ ଗାଇବ କହରେ ଶିମୂଳପାଳ !
ରକତ ମୋହର ବରଫ, ହାଡ଼ ଯେ ହୋଇଛୁ ପାଣି
କଣ୍ଠେ ମୋହର ଶୁଖିଛୁ ରସନା ନ ଆସେ କଥା

କ୍ଷୁଧିତ ମାନବ କାକୁତି କରଇ ପତାଇ ଥାଳ
ପଥ ପରେ ଶତ ମାନବର ଶିଶୁ ଦେଖାଏ କାନ୍ଦ
ଅକାଳେ ଝାଉଁଳି ପଡ଼ଇ କେତେରେ ଜୀବନ ଲତା !
ସବୁ ପ୍ରିୟ ସ୍ମୃତି ଅନୁଭୂତିମୟ ଅତୀତ କାଳ
ତୋତେ ଗୁହୁଁ ଆଜ ପାସୋରଦେଲରେ ଶିମୂଳପାଳ ; (୫)

ସାନ୍ତାଳ ଝିଅ ଛଳନା ବହୀନ ବଦନ ଶୋଭା
ବକାର ବହୀନ ହାସ୍ୟ ତାହାର ବମଳ ଚିତ୍ତ
ସାଥୀ ମେଳେ ହାତ ହଲଇ ଚଳଇ ସହଜ ଗତି

ମଧୁମାଳତୀର ମଞ୍ଜରୀ ଯେବେ ଶୋଭୁଛୁ ଗଛ
ଦୂର ବନ କୋଳୁଁ ଭସି ଆସେ ତାର ମଧୁର ଗୀତ
ରହି ରହି ମୋର ମରମେ ବାଜେ ତା' ବଧୂର ଯନ୍ତ
ବନର ବହଗୀ ପରାଏ ତାହାର ବତଇ କାଳ
ତୋତେ ଗୁହିଁ ସବୁ ପାସୋର ଦେଲରେ ଶିମୁଳପାଳ ! (୭)

ଶୀତର ଗୋଧୂଳି ଶୀତଳ ତୋ କୋଳୁଁ ଆସଇ ଗୃଲି
ବୁଡ଼ିଯାଏ ରବି ଉକୁଟାଇ ଛବି ତୋହର ପତ୍ରେ
ରହିଯାଏ ଆଖି ତୋର ଚୂଳେ ଲେଖି ସୁନାର ଗାର

ସାନ୍ତାଳ ଯୁବା ବାଂଶୀରେ କି ସ୍ୱର ଦଅଇ ଢାଳି,
ଆବରଣ ହୀନ ଧୂସର ଦେହେ ତା' କି ରୂପ ଝରେ,
କଣ୍ଠେ ଲଗାଇ ଜବାଫୁଲ ସମ ପୋହଳା ହାର !
ବନର ବହଗ ପରାଏ ତାହାର ବତଇ କାଳ,
ତୋତେ ଗୁହିଁ ଦୁଃଖ ପାସୋର ହଏ ରେ ଶିମୁଳପାଳ । (୭)

ଦେଖିଲି ଗୋଧୂଳି କେତେ ନବ ନବ ଲେଖିଲି ଛବି
ମରମ-ପୃଷ୍ଠରେ ନଭିଲାଣି କେତେ ନମିଷେ ଜଳି
ପଥ ଘାଟେ ଯେତେ ଦେଖିଲି ସୁଷମା ବଖାଣି ନୋହେ

କେତେ ରୂପେ ପ୍ରାଣ ପୂରିଲି ରସର ପରାସ ଲଭି !
ନାହିଁ ତ କଳନା କେତେ ଶତ ପଥେ ଆସିଲି ଚଳି
ଯାପିଥିଲି କେତେ ଯାମିନୀ ନବଜ ସୁଖର ମୋହେ !
ସବୁ ପ୍ରିୟ ସ୍ମୃତି ଅନୁଭୂତିମୟ ଅତୀତ କାଳ
ତୋତେ ଗୁହିଁ ଆଜ ପାସୋରଦେଲି ରେ ଶିମୁଳପାଳ ! (୮)

□□□

# ମୂକ ଭଗବାନ

ବୈକୁଣ୍ଠନାଥ ପଟ୍ଟନାୟକ

ଜୀବନର ଯଜ୍ଞେ ଯହିଁ ହୀନ ଅକିଞ୍ଚନ
ଲଭନ୍ତି ଆହୁତି, ତହିଁ ପାଉଛ ଆସନ
ହେ ଦରିଦ୍ର ସଖା ! ନିଖିଳର ରାଜେଶ୍ୱର !
କରିବାକୁ ଏ ଜୀବନ ସୁନ୍ଦର ଅମର ।

ବରି ନେଇଅଛ ଆପେ ଦୈନ୍ୟ ନିର୍ଯ୍ୟାତନ,
ସହସ ଲାଞ୍ଛନା ଭୋଗ କ୍ଷତ, ଅନଶନ,
କରିଅଛ ଶୁଭ୍ରଦେହ ଶୋଣିତ-ଆପ୍ଳୁତ
ମାନବ ଗରଳ ବସି କରୁଛ ଅମୃତ ।

ଅଶ୍ରୁ ଅନ୍ତରାଳୁ ତହିଁ ଫୁଟାଉଛ ହାସ,
ନିରାଶ ଅନ୍ଧାରୁ ତବ ଆଲୋକ ପ୍ରକାଶ ।
ପ୍ରଭଞ୍ଜନ ଝଞ୍ଜା ମେଳେ ହସ ତୁମେ ଶାନ୍ତ
ମୃତ ଜୀବନର ଭସ୍ମେ ଅରବିନ୍ଦ-କାନ୍ତ ।

ନିଖିଳ ବିଶ୍ୱର ପାପଭାରେ ନିଷ୍ପେଷିତ
ମନ୍ଦହାସେ ଗାଉଅଛ ଅମର ସଙ୍ଗୀତ ।
ଗାଉଛ ଦରିଦ୍ରପୁରେ ନିଖିଳର ବ୍ୟଥା,
ଭ୍ରାନ୍ତ ଏ ମାନବ ଲାଗି ଏତେ ହିଁ ମମତା ।

ନୟନ ଯୁଗଳୁ ବହିଯାଏ ବାରିଧାରା,
ଦିନୁ ଦିନ ବଢ଼େ ଯେତେ ଜୀବନର ଭାର
ସଭ୍ୟତାର କାଳସର୍ପ-ବିଷେ ହୋଇ ଘାରି
ପଡ଼େ ନାହିଁ ତୁମ ବ୍ୟଥା ଶ୍ରବଣେ କାହାରି ।

ତୁମ ଅଶ୍ରୁ ଯୋଗେ ହୁଏ କୁଳଶ ତରଳ,
ମୂକ ପରବତୁଁ ଫାଟି ପଡ଼େ ଅଶ୍ରୁଜଳ ।
ହେ ମୂକ ପାଷାଣ ପ୍ରଭୁ ! ଚର ଅଚଚଳ,
ହେ ଲାଞ୍ଛିତ, ନିଷ୍ପେଷିତ, ହେ ଶିବ, ମଙ୍ଗଳ !

ତୁମର ଶୋଣିତ ଅଶ୍ରୁ ପାନ କରି ପ୍ରାଣ,
ପରଶିଛୁ, କି ଆଦେଶ ଗାଇବାକୁ ଗାନ ?
ନତ ଶିରେ ଶ୍ରୀପଦ୍ମରେ ମାଗେ ଆଜ ଭିକ୍ଷା,
"ଦିଅ ସେ ଗୈରିକ ବାସ ଦାରିଦ୍ର୍ୟର ଦୀକ୍ଷା ।"

□□□

# ତୃତୀୟାକ୍ଷି

**ମାୟାଧର ମାନସିଂହ**

ଅସତ୍ୟରୁ ସତ୍ୟେ ଟାଣିନିଅ,
ଆଲୋକରେ ଘନ ଅନ୍ଧକାରୁ
ମରଣରୁ ନିଅ ଅମୃତରେ
କୁତ୍ସିତରୁ ଯା ମଧୁର ଚାରୁ ।

ବ୍ୟର୍ଥ ନୁହେଁ ସୃଷ୍ଟି କଉଣସି
ତୋ' ସୃଷ୍ଟିରେ ପରମ ଜନନୀ,
ଅସତ୍ୟ ବି ମାଧୁରୀରେ ଭରି
ମରଣ ବି ଶୁଭ ଆଗମନୀ ।

ଅସତ୍ୟକୁ ସତ୍ୟ ବୋଲି ଧରି
ଭଙ୍ଗୁରକୁ ବରିଚି ଅକ୍ଷୟ,
ତୋହହୀନ ମୋହାନ୍ଧ ଜୀବନ
ହେଉଛି ବା ବିଫଳତାମୟ ।

ଏଇ ତୋର ସୁନ୍ଦର ସଂସାର
ଏଥି ପ୍ରତି ନ କର ବିରାଗୀ,
ଏଥି ଯାହା ପରମ, ପାବନ;
ସେଥିପ୍ରତି କର ଅନୁରାଗୀ ।

ଅଛ ତମେ ଅଣୁ ଅଣୁ ବ୍ୟାପି,
ଓତପ୍ରୋତେ ଏଇ ପୃଥିବୀର
ପରତ୍ୟାଜ୍ୟ ହେଥ୍ଁ ହେବ କପାଁ
ଗୃହସ୍ଥଳୀ ମହା ଜନନୀର ।

ତହିଁ ସ୍ୱର୍ଗ, ଜ୍ୟୋତି ଓ ଅମୃତ
ଜନନୀର ପାଦପଦ୍ମ ଯହିଁ,
ଚକ୍ଷୁଷ୍ମାନ ସେହି ସେ ପୁରୁଷ
ତବ ପଦ ଯେ ଦେଖିପାରଇ ।

ଅନ୍ଧ ଥାଇ ଅନ୍ୟ ଧାମେ ଗଲେ
କି ହେବ ବା ଅଧିକା ଦର୍ଶନ,
ତୃଷ୍ଣାପ୍ରାପ୍ତି ତେଣୁ ଗୋ ଜନନୀ,
ତୋ ପରମ କରୁଣା ବର୍ଷଣ ।

ସ୍ୱର୍ଗ ନାହିଁ ଯିବାକୁ ମୁଁ ମାଗେ
ଧୃଣା ନାହିଁ କରେ ଏହି ଧରା,
ଓତପ୍ରୋତ ଯେ ହେତୁ ଜନନୀ
ଏଇଠି ତ ଅମୃତ ପସରା ।

ସତ୍ୟ, ଜ୍ୟୋତି, ମୁକ୍ତି, ଅମୃତତ୍ତ୍ୱ
ଏଇଠାରେ ହିଁଅ ଆମ କରେ,
ମାୟା ଯାହା ବୁଝୁ ଦୟା ବୋଲି
ମୁକ୍ତି ପଥ କର ବନ୍ଧନରେ ।

□□□

# ଗାନ୍ଧିଜୀ

ମାୟାଧର ମାନସିଂହ

ସତ୍ୟ ସେ ପୂଜେ, ଶତ୍ରୁ ତାହାର ନାହିଁ
ଅହରହ ସେ ଗୋ ଝୁରୁଥାଏ ପର ପାଇଁ ।

ଦୁଇ ହାତେ ଏକ କରିଲା ସେ ଆଜ ବ୍ରାହ୍ମଣ, ପାରିଆ,
ନିଷ୍ପାପ ତାର ଶୋଣିତ ବିନ୍ଦୁ, ଅହିଂସ ତାର ସ୍ପୃହା,
ଅଞ୍ଜଳି ଭରି ବିଷପାନ କଲା, ଧରାର ଦଳିତ ପାଇଁ,
ସତ୍ୟ ସେ ପୂଜେ, ଶତ୍ରୁ ତାହାର ନାହିଁ ।

କ୍ଷୀଣ ଜୀବ ସେ ତ, ଡରିଲା ନାହିଁ ସେ
କମାଣେ କି କନ୍ଧୁଆଳେ,
ଶତ୍ରୁରେ ଦିଏ ନିଜ ସନ୍ମାନ
ହସି ପଶେ କାରାଗାରେ ।
ନିଜ ତପେ କରେ ଶତ ଶତ ଯୁଗ
ଅନ୍ୟାୟ ଧରାଶାୟୀ,
ସତ୍ୟ ସେ ପୂଜେ, ଶତ୍ରୁ ତାହାର ନାହିଁ ।

ଆସିଛି ସେ ଆଜ ହିଂସା, ରକ୍ତ
କରୁଣାରେ ଦେବ ଧୋଇ
ପର ପାଇଁ ସେତେ ଜଂଜାଳ ନିଜ
ମସ୍ତକେ ନେବ ବୋହି ।
ପରର ମୁକ୍ତି ପାଇଁ ସନ୍ନ୍ୟାସୀ,
ସୁଖ ତା ଜୀବନେ କାହିଁ ?
ସତ୍ୟ ସେ ପୂଜେ, ଶତ୍ରୁ ତାହାର ନାହିଁ ।

ଦେବତା ଆତ୍ମା ବହେ ସେ ତାହାର
କ୍ଷୀଣ ମାଟି ଅବୟବେ,
ପଦ୍ମ ବିକାଶ ତେଣୁ ସିନା ତାର
ଚଲି ପଥେ ସମ୍ଭବେ ।
ବୁଦ୍ଧ, ଖ୍ରୀଷ୍ଟ ଏକା ସେ କରିଲି
ପତିତଙ୍କୁ କଲି ଭାଇ
ସତ୍ୟ ସେ ପୂଜେ, ଶତ୍ରୁ ତାହାର ନାହିଁ ।
ଯେ ପଥେ ଯାଏ ସେ ସେ ପଥେ କରଇ
କରୁଣା-କୁସୁମ ବୃଷ୍ଟି,
ବ୍ୟଭିଚାର, ପାପ, ଅନାଗ୍ରହରୁ ସେ ଗୋ
କରେ ସତ୍ୟର ସୃଷ୍ଟି ।
ସମାଜରେ ନୂଆ କଳେବର ହିଏ
ତୁଳନା ତାହାର କାହିଁ ?
ସତ୍ୟ ସେ ପୂଜେ, ଶତ୍ରୁ ତାହାର ନାହିଁ ।
ଶିଶୁ, ନର, ନାରୀ ପାଗଳ ତା ପାଇଁ
କାରାଗାର ନେଲେ ବରି,
ରୁକ୍ଷ ପଥରେ କରିଲେ ଯାତ୍ରା
ଖଦ୍‌ଦଡ଼ ପରିହରି ।
କମାଣେ ଭେଟିଲେ ବର୍ଣ୍ଣିଷିକା ଯାର
ଥିଲି କଟୁଆଳ ରହି
ସତ୍ୟ ସେ ପୂଜେ, ଶତ୍ରୁ ତାହାର ନାହିଁ ।
ଯାହା ସେ କରଇ କରେ ନିବେଦନ
ଭଗବାନ ପାଦତଳେ,
ମଥା ଖାଲି ନତ ହୋଇ ଆସେ ତା'ରେ
ଗାନ୍ଧିର ନମସ୍କାରେ ।
ଧନ୍ୟ ତେଣୁ ଏ କବିର ଲେଖନୀ
ମହିମା ତାହାର ଗାଇ,
ସତ୍ୟ ସେ ପୂଜେ, ଶତ୍ରୁ ତାହାର ନାହିଁ

□□□

# ବୁଢ଼ାରଜା

ବ୍ରଜମୋହନ ପଣ୍ଡା

ପ୍ରକୃତ ସୁନ୍ଦରୀ	କଳାସ ଗିରି
ଶୋଭା ବରଧନେ	ସମ୍ବଲ ଶିରୀ
ସମ୍ବଲର ଭୂଷା	ଶୋଭା ରୁଚିର
ତୋ ଯୋଗୁ ସମ୍ବଲ	ଉନ୍ନତ ଶିର
ନାମ ତୋର ବୁଢ଼ାରଜା
ମସ୍ତକେ ରଜତ	ଶିବାଳୟ ଚୂଡ଼େ
ଫରହର ଉଡ଼େ ଧ୍ୱଜା ।

ସ୍ୱଭାବେ ଭାବୁକ	ମନଃ ବିକାଶି
ତୋହର ସୁନ୍ଦର	ପାଦପ ରାଶି,
ସୁଶ୍ୟାମଳ ପର୍ଣ୍ଣେ	ମଣ୍ଡି ବଦନ
ଛନ୍ଦ ଅନ୍ତରାଳେ	ଭୁଲାଏ ମନ,
ମଣ୍ଡେ ତୋ ଅଙ୍ଗ ଆବର
ଆପାଦ-ମସ୍ତକ	ବଲ୍ଲରୀ ବ୍ୟାପୃତ
ଶୁଭ୍ର ସୋପାନ ସୁନ୍ଦର ।

ମଣ୍ଡି କଟିଦେଶେ	ପଥ ସୁଗମ
ଠିଆ ପୂର୍ବଭାଗେ	ମୋତି ଝରଣ
ପଶ୍ଚିମେ ସଙ୍ଗିନୀ	ଲକ୍ଷ୍ମୀ ଡୁଙ୍ଗୁରୀ
ଉତ୍ତରେ ଭଗିନୀ	ଲମ୍ବ ଡୁଙ୍ଗୁରୀ
କଳକଳେ ଗାଇ ଗୀତ
ଦକ୍ଷିଣେ ସୁନ୍ଦର	ବେଣୀ ମହାନଦୀ
ଭୁଲାଏ ତୋହର ଚିତ୍ତ ।

ଅଙ୍କେ ତୋର କେତେ    ବୃକ୍ଷ-ଲତିକା
କାହିଁ ବା ଶେଫାଳି    ଗିରି ମଲ୍ଲିକା,
କେତେ ପୁଷ୍ପ ସାଜେ    ପ୍ରମୋଦ କୋଷ
ଦେଖି ତା ଦର୍ଶନେ    ଲଭନ୍ତି ତୋଷ,
ତୋ ଶିରୁଁ ଚନ୍ଦ୍ରଶେଖର
ଦେଖୁଥାନ୍ତି ମୁଦେ    ପାଦପ-ସଙ୍କୁଳ
ଅଦୂର ରମ୍ୟ ନଗର ।

ବାଲ୍ୟ ଯୌବନର    ବିହାର ଭୂମି
ଅଛୁ ମାତ୍ର ଗିରି    ତୁ ନଭଶ୍ଚୁମ୍ବୀ
ତୋ ଶୋଭା-ସୌନ୍ଦର୍ଯ୍ୟ    ଭୋଗିଣ ନିତି
ବଢ଼ିଛି ତୋ ପ୍ରତି    ଅଟଳ ପ୍ରୀତି,
ତୁ ସ୍ୱର୍ଗୀୟ ଶୋଭାକର
ଉପମା ଦେବାକୁ    ତୋହର ସଙ୍ଗତେ
ଭବେ କାହିଁ ପଟାନ୍ତର ?

ପରବାସୁ ଯେବେ    ଫେରଇଁ ମୁଦେ
ଜାଗେ କେତେ ଭାବ    ଏ କ୍ଳାନ୍ତ ହୃଦେ,
ବାଷ୍ପରଥୁଁ ଦୃଷ୍ଟି    ତୋହର ଅଙ୍ଗେ
ପଡ଼େ ଭାସେ ଆଖି    ନୀର ତରଙ୍ଗେ
ହୋଇଣ ପ୍ରେମେ ବିଭୋର
ସଜଳ ନୟନେ    ପୁଲକ ପରାଣେ
ନମଇଁ ପୟରେ ତୋର ।

# ନିଜ ବନ୍ଦନା ପଢ଼େ

ଅନନ୍ତ ପଟ୍ଟନାୟକ

ନିଜ ବନ୍ଦନା ପଢ଼େ, ସଜନୀରେ !
ନିଜ ବନ୍ଦନା ପଢ଼େ,
ରଶ୍ମି-ଲୁଳିତ ରସ-ଉତ୍ସବେ
ଝୁମି ଝୁମି ଆଜ ପ୍ରୀତି-ସଞ୍ଚରେ
ନବ ତୁଷାର ଝଡ଼େ ।

ବନ୍ଧୁ ପ୍ରି ତମେ ମୁହଁ ମୋଡ଼ି ଯାଅ
ମୁହଁ ମୋଡ଼ି ରହ ଚାହିଁ;
ମୁଗ୍ଧ ମୋ ଧରା
ପ୍ରୀତି-ଅମ୍ବରା
ରସ-ଶୃଙ୍ଗାରେ ସଙ୍ଗୀତଝଙ୍କରା
ରଚେ ଅଭିସାର କାହିଁ !

ଶ୍ରମଶିଞ୍ଜିନୀ ଉର୍ମିଳ ସ୍ବପ୍ନ
ମନ ଅଙ୍ଗନେ ପଡ଼େ
ନିଜ ବନ୍ଦନା ପଢ଼େ !

ଏଇ ରାଜଧାନୀ ରାଜଘାଟ ତଳେ
ରୁଧିରେ ରୁଧିରେ ମର୍ମ ପଖାଳେ
ନିଭୃତେ ଜଳେ କେତେ ଉଷସୀର ଉଷା
କେତେ ଯଶସ୍ବୀ ମୁଦରେ ମୁଦ୍ରରେ
ତାର ବିଦ୍ୟୁତ-ଭୂଷା ।
ନିଜ ବନ୍ଦନା ପଢ଼େ, ସଜନୀରେ
ଅନୁକମ୍ପାରେ ହସ !

ନିଜ କ୍ଷୁଦ୍ରତା ଅଞ୍ଚଳେ ଘିରୁ !
ସୁର ବିଭ୍ରମେ ପଶ !

ତମେ କି ଜାଣୁଚ ?
ସେ ପାଖେ ଖଡ଼୍‌ଗ, ଏ ପାଖେ ଅଶ୍ରୁଧାର,
ପଶ୍ଚାତେ ନାଚେ ମରୁ
ସମ୍ମୁଖେ ଥରେ ଘନ-କୁଜ୍‌ଝଟି ରଣ-ଉଦ୍‌ଜାନ ତାର
ଧୀର ଅସ୍ଥିରେ
ହୃଦ-ବସ୍ତିରେ
ବୁଲେ ନିର୍ଭୀକ ବୋଧିକଳ୍ପର ତରୁ !!

ଶତ ଦର୍ଶନ ଶାଖାରେ ଶାଖାରେ
ଆଶା ଆଗ୍ନେୟ କଢ଼େ
ନିଜ ବନ୍ଦନା ପଢ଼େ ।

ଝଲମଲ କରେ ସମୀପେ ସୁଦୂରେ କେତେ ହତ୍ୟାର ପ୍ରେତ,
ମର୍‌ମର ଉଡ଼େ ପ୍ରାଣ ଊର୍ମିର ନେତ !
କେତେ ଉଦ୍ଧତ ସ୍ୱର୍ଣ୍ଣର ହ୍ରେଷା
ମତ୍ତ ବାରଣ ଗୁଳି
କାହିଁ ନିଭିଗଲା···କାହିଁ !

ଇତିହାସ-କୂଳେ ଛିନ୍ନ ସଜନ !
ଭ୍ରାତୃ ବିବାଦେ ଅକ୍ଷକ୍ରୀଡ଼ାର ପାଲି
ନିଃଶ୍ୱାସେ ମୋର
ନାହିଁ ବାନ୍ଧବୀ ନାହିଁ !
ଠୁକ୍ ଠୁକ୍ ବାଜେ ମୈତ୍ରୀ-ନିହଣ
ନିରେଳ କର୍ମ-ମାଡ଼େ
ସ୍ୱଚ୍ଛ ସ୍ୱପନ ଫିକେତେ ଅବଗାହି,
ଜରା-ଯୌବନ-ପକ୍ଷ ଉହାଡ଼େ
ଦ୍ୱାରେଟି ବାଉଁଁ ବଢ଼େ ରେ ଶତ ବଢ଼େ !

କେତେ ବ୍ୟର୍ଥତା ବାଲିର ପାହାଡ଼େ
ଇସ୍ପାଣ କୁହୁ ବଢ଼େ,
ନିଜ ବନ୍ଦନା ପଢ଼େ !

ନିଜ ବନ୍ଦନା ପଢ଼େ ସଜମାରେ
କୁଞ୍ଚିତ କର ନାସା,
ଦ୍ୱେଷ କର୍ମିତ ପକ୍ଷରୁ ଢାଳ ମ୍ଳାନ ହିଂସୁକୀ ଭାଷା
ନିଜ ବନ୍ଦନା ପଢ଼େ ସ୍ପର୍ଦ୍ଧାରେ
ଗୀତି ଶ୍ରଦ୍ଧାରେ
ନବ ଶୌର୍ଯ୍ୟର ସ୍ନେହ-ଶାଦ୍ୱଳ ଗଢ଼େ
ନିଜ ବନ୍ଦନା ପଢ଼େ !

ମୁଁ କି ଢାଳୁନାହିଁ କୁସୁମ ଅର୍ଘ୍ୟ
ଦଗ୍ଧ ନୟନ ପଥେ ?
ମୁଁ କି ଜାଳୁନାହିଁ ସୂର୍ଯ୍ୟ-ସ୍ୱେଶନ
ସ୍ୱମ-କୋଣାର୍କ ରଥେ ?
ମୁଁ କି ତୋଳୁ ନାହିଁ ମୈତ୍ରୀ-ମୀନାର
ମମତା-ସେତୁରେ ଅଶ୍ରୁ-ଝରଣେ ତାଜ୍
ମୁଁ କି ତୋଳୁ ନାହିଁ ଗହମ୍ ହସରେ
ବସ୍ତୁତ ଏସ୍‌ରାଜ୍ ?
ମୁଁ କରେ ବନ୍ଦନା ନଥିରେ ନଥିରେ
ଦୁର୍ମିତ-ବ୍ରତ
ଚର୍ଚ୍ଚିତ ତନୁ
ଦୁଃଖର କ୍ଷତ ?
ମୁଁ କରେ ଗାଇନ
ଧୂଳି ଧରଣୀର ଧୀର ଶର୍ମିଳ ଗାନ ?

ମୁଁ କରେ ଲେଖନ
ବାହାରେ ଆକାଶ ଭିତରେ ଆକାଶ

ଅନ୍ତ ନାଡ଼ୀର ମଣିପଦ୍ମରେ ଭୃଙ୍ଗର ହାସ
ମୁଁ କରେ ମାନଚ ବ୍ୟବଧାନ କଥା ସମ୍ମାନ-ଅବଧାନ ?
ମୁଁ କରେ ଖୋଳୁନ ମର୍ମର ଖଣି
ମରୁ ଖର୍ଜ୍ଜୁରେ ଫୁଲ ଫଲ୍‌ଗୁର ଧାର
ମୁଁ କରେ ବୁଣୁନ ଜଗନ୍ନାଥର ବୀଜ ଓଁକାରେ
'ଜାଗ୍' ଜୀବନର କେତେ ଝୁମୁରୁର ଜ୍ୱାଳା ।

କାଣ୍ଡିଶ ବଧୂ ରକ୍ତ କପାଳେ
ମୁଁ ଯେ ସତର୍କ
ପ୍ରୀତି-ବିତର୍କ
କେତେ ବକଗଳ ନଶି ଆଶ୍ଳେଷେ
ଅଗଳ ଲକ୍ଷ୍ମୀ ମଗଳର ଅଭିଯାନ,
ସଗ୍ରାମୀ ମୁଁ ତ କାଳ ଶିର୍ଷୀ,
ଶିର ବଳଷ୍ଟୁ ଖୀର ଚକାର୍ଷୀ
ଅଣୁ ଗର୍ଭରେ
ନମିଷୁ ନମିଷେ
ଜୀବନର ଅଭିଜ୍ଞାନ ।

ଲଢ଼େ ମୁଁ ମୀରବେ
ଲଢ଼େ ମୁଁ ଧୀରବେ
ମୃତ୍ୟୁର ସହ ଲଢ଼େ
ନଜ ବନ୍ଦନା ପଢ଼େ, ସଜମରେ
ନଜ ବନ୍ଦନା ପଢ଼େ !

ବର୍ତ୍ତୀଳ ପୁରେ ଯେ ହାତ ନଷ୍ଟ ଏ
ବର ବର୍ତ୍ତିମା ବଷ,
ଯେ ହାତ ଆତ୍ମା
ରଚି-ଯନ୍ତ୍ରୀର
କୃତି-ମନ୍ତ୍ରୀର
ଗଢ଼େ ମୁଁ ଗର୍ବେ ଗଢ଼େ,

କେତେ କରୱାର କର୍ଣ୍ଣିକାରର ବକ୍ଷେ ଜଳରେ
 କ୍ଷୁବ୍‌ଧେ ଢଳରେ
ରଣ ଉତ୍ସବ ଦଳ ମୁଁ ଦଳରେ
ନିଜ ବନ୍ଦନା ପଢ଼େ,
ତୃପ୍ତି ବିହୀନ ତୃଣର ତୃଷାରେ
ସ୍ନେହ ଶୀକ୍ରାରେ ପଢ଼େ
ଭାଷା ଵଭାଷାର ବନ୍ଧନ ଚିର
ତୋର ଚୁମ୍ବନ ଝଡ଼େ !
ସଜନୀ ଲୋ, ତୋର ଚୁମ୍ବନ ଝଡ଼େ !

ଚୁପ୍ କର ! ଚୁପ୍ କର !
ମୋ ବୁଝ୍ ବାଜଲା କପାଳେ କପାଳେ
ଠକ୍ ଠକ୍ ଏଇ
ସାମ୍ୟର ତାଳେ
ହୃଦୟେ ହୃଦୟେ
ଶାନ୍ତ ଉଦୟେ
ପ୍ରୀତି-ଜଦ୍‌ବାଦେ
ନର୍ମମ ଥର ଥର
ଚୁପ୍‌କର ! ଚୁପ୍‌କର !
ମୋ ବୁଝ୍ ବାଜଲା ଠକ ଠକ୍ ଏଇ
ସୁନ୍ଦରତମ ସୃଷ୍ଟିରେ ଝର୍ ଝର୍ !

□□□

# ପାଇକ-ବଧୂର ଉଦ୍‌ବୋଧନ

କୃଷ୍ଣଚନ୍ଦ୍ର ତ୍ରିପାଠୀ

ଏଇ ଦୁର୍ଗ ଏଇ ବନ ଏ ନୀଳ ପ୍ରାନ୍ତର
ପଡ଼ିଅଛି ଶମଶାନ ପରି,
ନାହିଁ ସେ ପାଇକ ବାଦ୍ୟ-ରଣ-ଶିଙ୍ଗା
ନାହାନ୍ତି ସେ ଯୋଦ୍ଧୃବେଶ ଧରି—
ଖଣ୍ଡାୟିତ ବୀର
ଫୁଟେନାଇ ତୋପ ଓ ବନ୍ଧୁକ
ଛୁଟେନାହିଁ ଲକ୍ଷ ଲକ୍ଷ ତୀର,
ଟପ୍ ଟପ୍ ଚାଲେ ନାହିଁ ଘୋଡ଼ା
ସମୀରଣ ବୋହିଯାଏ ମୀରବେ ଗୁଞ୍ଜରି
ବୁଲନ୍ତି ଶ୍ୱାପଦକୁଳ ହୋଇ ଯୋଡ଼ା ଯୋଡ଼ା

ଏଇ ମାଟି !
ଚାହିଁଲେ ନିମିଷେ ଯାରେ
ରକ୍ତଯାଏ ତାତି—
ରହିଅଛି ପଡ଼ି
ଅତୀତର ଲକ୍ଷବୀର ଗାଥା
ବୁକୁତଳେ ଧରି !

କହ କଥା ହେ ବନ ପ୍ରାନ୍ତର !
କହ କଥା ସମର ପ୍ରାଙ୍ଗଣ !
କହ କଥା ଭଗ୍ନ ଦୁର୍ଗଶିଳା
କହ କଥା ଗଇଳ କାନନ !
କେମନ୍ତେ ସେ ଖଣ୍ଡାୟିତ ବଧୂ
ରଣ ଶିଙ୍ଗା ବଜାଇ ବଜାଇ

ବୀର ବେଶେ ସମର ପ୍ରାଙ୍ଗଣେ
ଆଣିଲା ତା ସ୍ୱାମୀରେ ସଜାଇ,
କରେ ଦେଲା ତୀକ୍ଷ୍ଣ ତଲବାର
ଭାଲେ ଦେଲା ବିଜୟ ସିନ୍ଦୂର
ଶରତୂଣୀ ବାନ୍ଧିଲା ଚରମେ
ଆରକରେ ଘାସ୍ତ ଧନୁଶର,
କେମନ୍ତେ ସେ ବୀର୍ଯ୍ୟବନ୍ତ ବାଳା
କଣ୍ଠତଟୁ ଦେଲା ହୁଳହୁଳ
ବନ୍ଦାଇଲା ସ୍ୱାମୀରେ ସୋହାଗେ
ଯାଅ ଦର୍ପେ ଯୁଦ୍ଧ କର ବୋଲି,
ମନ୍ଦାରର ମାଳା ବକ୍ଷପଟେ
ଲମ୍ବାଇଲା ଆଦର ଯତନେ
ଗାଇଲା ସେ ସମର ସଙ୍ଗୀତ
ମେଘମନ୍ଦ୍ରେ କୁଟୀର ପ୍ରାଙ୍ଗଣେ ।

ଯିବାପାଇଁ ହେବ ରଣ ପ୍ରାଙ୍ଗଣେ ଯିବାପାଇଁ ହେବ ବୀର
ମାରିବାକୁ ହେବ ଲକ୍ଷ ସଇନ ଫୋପାଡ଼ି ଲକ୍ଷ ତୀର ।
ତରୁଣୀ ବକ୍ଷ ଲାଗି ପ୍ରିୟତମ ଜନ୍ମ ନୁହଇ ତବ
ଜନ୍ମଭୂମିର ମଙ୍ଗଳ ଲାଗି ଜୀବନ ଦେବାକୁ ହେବ ।
ଶତେକ ସୈନ୍ୟ ସାଥେ ରଣ କରି ବିଜୟ ଲକ୍ଷ୍ମୀ ବରି
ଆସିବ ଯେ ଦିନ କୋଟି ଗଉରବେ ନେବି ମୁଁ ଆଦରକରି
ଆଗେ ବାଜୁଥିବ ସଂଗ୍ରାମ ବାଜା ପଛେ ଆସୁଥିବ ତମେ
ବିଜୟ କେତନ ହାତେ ଧରିଥିବ ଦେଖିବି ନୟନକଣେ ।
ବନ୍ଦାଇନେବି କୁଟୀରେ ସୋହାଗେ ପଦ ବନ୍ଦନାକରି
ଭୁଲ ପ୍ରିୟତମ ସମର କ୍ଷେତ୍ରେ ବକ୍ଷେ ଅନଳ ଭରି ।

× × ×

କାହିଁ ତାର ସେହି ବାଣୀ ?
କାହିଁ ତାର ଅଗ୍ନିବୋଳା ଦୃପ୍ତ ଉଦ୍‌ବୋଧନ !

କାହିଁ ସେଇ ଖଣ୍ଡାଯୁତ ବଧୂ ?
ଏ ଭଗ୍ନ ପ୍ରାଚୀର ପ୍ରତି ଧୂଳି ମାଟି ଗୋଡ଼ି
—ମେଳେ ସେଥିରେ ରହିଥିବ ସେଇ ଅଗ୍ନିବାଣୀ !
ଏ ବନ ପ୍ରାନ୍ତର ପଥେ ସମୀରଣ ଗୁଞ୍ଜରଣେ
ସେଇ ବାଣୀ ଥିବନି କି ମିଶି ହବା ଯାମୀ ?
ଏଇ ପଥ ତରୁ ତୃଣ ଶୁଣିଥିବ ନାକି
ସେ ବାଣୀର ଅଗ୍ନି ଉତ୍ତେଜନା;
କେମନ୍ତେ ସେ ବୀରବାଳା ଦେଶଲାଗି ତା'ର
ସ୍ୱାମୀରେ ତା ଦେଇଥିଲା
ସିଂହ ଉଦ୍‌ବୋଧନା ?

ମରନ ମରନ ତୁମ୍ଭେ ଏ ମାଟିର ପ୍ରତିରେଣୁ ତଳେ
ତୁମର ସେ ଅଗ୍ନିଶଙ୍ଖ ବାଜେ ଅନ୍ତରଳେ,
ତୁମର ସେ ପ୍ରସାରିତ ବିରାଟ ଅନ୍ତର,
ଏଇ ଠାଇଁ ଲଟା ବୁଦା ଦୁର୍ଗ ଶିଳା ମେଳେ
ଲୀଳାୟିତ ଯୁଗ-ଯୁଗାନ୍ତର !

ଆସ ପାନ୍ଥ !
ଆସ ଏଥି ଆସ
ଆସ ପୌର ! ଆସ ଜାନପଦ !
ବସ ଏଇ ଶିଳା ଆସ୍ତରଣେ
ରୁହ ବକ୍ଷଭର !
ବିରାଟ ଅନ୍ତର କା'ର ଏ ଭୂମିର ପ୍ରତି ରେଣୁ ତଳୁ
ଅଗ୍ନିବାଣ ସମ
କହିଯାଏ ବିରାଟ ବାରତା ବିଶ୍ୱେ ଅନୁପମ !
କର ନମସ୍କାର !
ଶୋଣିତେ ଶୋଣିତେ ତବ ଖେଳଉଠୁ ଜାତିର ଝଙ୍କାର
ଏ ବିଜନ ଭଗ୍ନଦୁର୍ଗ, ଏ ବନ-ପ୍ରାନ୍ତର,
ଯୁଗ-ଯୁଗ ସଜୀବ ସୁନ୍ଦର !! !

□□□

# ନୁହେଁ ଏହା ଚିତା

ସଚ୍ଚି ରାଉତରାୟ

(ବାକିଖଣ୍ଡତ)

ନୁହେଁ ବନ୍ଧୁ ନୁହେଁ ଏହା ଚିତା,
ଏ ଦେଶ ତିମିର ତଳେ
ଏ ଅଳିଭା ମୁକତି ସଳିତା ।
ନୁହେଁ ଏହା ଜଳି ଯିବା ପାଇଁ ।
ଏହାର ଜନମ ଏଥି ଜାଳି ପୋଡ଼ି
ଦବାକୁ ଧସାଇ ॥

ଉଆଁସ ପାରେଇ ଯେବେ
ଏ ଅଂଧାରି ଅମୁହାଁ ଦେଉଳେ
ପ୍ରେତାପ୍ଣିତ ଅଂଧ ବ୍ରତ
ମଥା ପିଟେ ଯାର ବେଦୀ ମୂଳେ
ଏ ତାହାର ଶେଷ ଦୀପାୟନ,
ସଂଜର ତୁଳସୀ ମୂଳେ
ପ୍ରଦୀପର ନିରୁକ୍ତ ବେଦନ,
ଜଳଉଠି କ୍ଷଣିକ ସକାଶେ
ସାର୍ଥକ କରଇ ଯଥା 'ଚିରଂତନେ'
ମଂଦ ଉପହାସେ ।
ସେହିପରି ତାହା
ସଂକ୍ଷିପ୍ତ ଜୀବନ ଦେଇ ଜୀବନର ଅନ୍ତରିକ୍ତ ଯାହା-
ଗର୍ଭେ ତାର ହୋଇଛି ଜନମ,
ତାହାରି ବଂଦନା କରେ ଆୟୁଷ୍ମାନ
ଶିଖା ପ୍ରିୟତମ !!

ଏ ଶିଖା ଦେଇଛୁ ଆଜ
ଇତିହାସେ ହାତ ଟେକ ଦାନ
ଶତାବ୍ଦୀର ଶ୍ରେଷ୍ଠ ଫୁଲ,
ମୁକୁଳିତ 'ମୃତ୍ୟୁହୀନ' ପ୍ରାଣ ॥

କାରନ୍ତ ଏ ଜନତାଙ୍କୁ ଦେଇଚ ଏ
ତାହାର ଗୁଳକ
କ୍ଷୁଦ୍ର ଏକ ନାଉରି ବାଳକ
ବାହିବାକୁ ଏଦେଶର ତରି,
ଭିଡ଼ ନାହିଁ ଘାଟେ ନାଆ
ନାଉରିଆ ପାରେ କରେ ମରି ?

ଆଜ ତାର ବାଣୀ
ଶୀତଳ ଧମନୀ ତଳେ ପଠାଇଛୁ ଅପୂର୍ବ ଆହ୍ୱାନୀ ।
ଜ୍ୱଳଂତ ଏ ଲେଲିହାନ, ସ୍ୱାହାହୀନ ଶିଖାର ଅନଳେ
ଜୀବନର ମାଲ୍ୟ ଥରେ, ମରଣର ଗୃରୁ ସ୍ୱୟଂବରେ,
ରଚିବାକୁ ସୃଷ୍ଟିର ଭୂମିକା,
ଉଷାର ଗୋପନ ଅର୍ଥ ରଜନୀର ଲୁପ୍ତ ପାଦଟୀକା
ରଖେ ଯଥା ଧରି,
ଆପଣା ମୃତ୍ୟୁରେ ଫୁଟେ ଆଜ ସେ'ତ ଝରି ସେଇପରି ॥

□□□

# ଗ୍ରାମ ପଥ

ବିନୋଦ ଚନ୍ଦ୍ର ନାୟକ

[ ୧ ]

ଦୂରେ ତାଳବଣ ଆକାଶେ ଶୁଣାଏ
ମାଟିର କବିତା କସେ
ଏ ଗ୍ରାମର ପଥ ଚହିଁ ଦିଗନ୍ତେ ମିଶେ ।
କ୍ଷେତ ପରେ କ୍ଷେତ
କାଶ ଫୁଲ ଆଉ
ବେଣାରେ ଜଟିଳ ପାଟ,
ପାଟ ପରେ ବଣ, ବଣ ପାରିହେଲେ
ମାମୁଁ ଘର ଗାଆଁ ଦିଶେ ।

[ ୨ ]

ପଥର ସେ ପାଖେ ବୁଣା ହରଡ଼ ଓ ବୁଟ
ଆଗରେ ସ୍ୱରଣ ପଡ଼ିଆ ଗୋରୁର ଗୋଠ,
ଶିମୁଳ ଶାଖାରେ
ବାଦୁଡ଼ୀ କପୋଣ୍ଡ
ଉଠ୍ ପୂତ ଉଠ୍
ଉଠ୍ ପୂରିଲଣି ମାଣ,
ଏ ପାଖେ କଇଁର ପୋଖରୀ ଗାଧୁଆ ତୁଠ ।

[ ୩ ]

ଭୂଆସୁଣୀ ମାନେ ପାଦର ପାହୁଡ଼ ଏଥି
ମୁକୁଳା ବେଣୀରେ ପଖାଳେ ଦେଇଣ ମେଥି

ନଣନ୍ଦ ତାହାର ଅଧିକ ଚତୁରୀ
ଗାଲରେ ହଳଦ୍ଦ ମାଖେ
ହଳଦି ପାଣିରେ ମୁହଁର ଛାଇକି ଦେଖେ ।

[ ୪ ]

ପୋଇ ଶାଗ ଆଉ ପାଣିକଖାରୁର ଲତା
ମାଡ଼ି ମାଡ଼ି ଆସି ଟପିଲଣି ଘର ମଥା
ସଜନାର ଶାଖୁ
ଝରିପଡ଼େ କେତେ ଫୁଲ
ବାଡ଼ ଦେହେ ପୁଣି ଅପରାଜିତାର ଛଟା ।

[ ୫ ]

ସେଇ ପଥେ ଫେରେ ଗ୍ରାମ ବଧୂ ସାରି
ସକାଳ ସ୍ନାହାନ ଏକା
ଧୂଳିରେ ଆଙ୍କି ସଜଳ ଚରଣ ରେଖା
ମାଆ ବୋଲି ଥରେ
ଡାକିବାକୁ ପ୍ରାଣ ଲୋଡ଼େ,
ପୃଥିବୀର ସମ ସହନଶୀଳା ସେ
ଅସୀମ କରୁଣାବନ୍ତୀ
ନୟନେ ଶତେକ ଯୁଗର ବେଦନା ଲେଖା ।

[ ୬ ]

ଏ ପଥେ ଗ୍ରାମର ତରୁଣ ବିଦେଶେ ଯାଏ
ଲେଉଟା ପଥକୁ ନୂତନ ଘରଣୀ
ଆକୁଳେ ଅନାଇଁ ଥାଏ ।
କି ବାରତା ତାରେ ଆଣେ, କିଏ ଜାଣେ
ଅଧାର ଲେଖି ଏ କାଳ ।
ଏ ଗ୍ରାମ ଦେବକ୍ଷି
ସେ ବ୍ୟଥା ବୁଝେ କି ହାୟ !

[ ୭ ]

ଏ ପଥରେ ଗ୍ରାମେ ପ୍ରବେଶ ହୁଅଇ ବଧୂ
ବଢ଼ର ବୁକୁର ମମତା ମୁଖର ମଧୁ,
ପୁଅ ଝିଅ ନାତି ନାତୁଣୀରେ ରଖି
ମଶାଣି ଏ ପଥେ ଫେରେ
ଆସିବା ଜନର ସାକ୍ଷୀ ଏ ପଥ
ଫେରିବା ଜନର ବନ୍ଧୁ ।

[ ୮ ]

ଜହ୍ନ ଏ ପଥେ ଢାଳଇ ରଜତ ମାୟା
କୁମାଷ୍ଟି ଦଳର ମିଳିତ କଣ୍ଠୁ
ସଙ୍ଗୀତ ଉଠେ ଆହା,
ଧାନ କ୍ଷେତେ ଚଲେ
କୃଷକ ତରୁଣ
ରାବି ଶୟନ ପାଇଁ,
ପ୍ରାନ୍ତର ଦେଇ ଧାଏଁ ଦେଖ ଦେଖ
ଭସାଣି ମେଘର ଛାୟା ।

[ ୯ ]

ଧୂଳିଘର ଗୁଡ଼ି ଏ ପଥେ ଚଳଇ
ଶାଶୁ ଘର ଗାଆଁ ଝୁଅ
ମାଆର ପଣତେ ବନ୍ୟା ରଚଇ
ଅମାନିଆଁ ଆଖି ଲୁହ,
ଏ ପଥର ସ୍ମୃତି ଚେତନା ଲେଖଇ
ସେ କେଉଁ ଜନମ କଥା,
ଛାତି ଫାଟିଯାଏ କ୍ରନ୍ଦନେ ତାର
ବିଧାତା କିପାଇଁ ଏ ବିଧାନ କଲା ଲୁହ ?

[ ୧୦ ]

ଶ୍ୟାମ ପ୍ରାନ୍ତରେ ଉଲଙ୍ଗ ଶିଶୁ ସମ
ଏ ପଥ ଘୁମାଏ
ମଳିନ ନଭେ ଯଥା।
ଗ୍ରାମ୍ୟପଥ ମନୋରମ,
ଗ୍ରାମ ଝରଣାରେ
ଲଙ୍ଘି ଏ ପଥ
ସରଗ ସୀମାକୁ ଧାଏଁ
ସନ୍ନ୍ୟାସୀ ସେ କି, ବିଜନେ କରୁଣା ଧନ ।

[ ୧୧ ]

ବନ୍ଦନା ତତେ କରଇରେ ଗ୍ରାମ ପଥ
ବାଳକ ବେଳର ହେ ମୋର ପ୍ରିୟ ସାଥି
ଅଯୁତ ଦଣ୍ଡବତ,
ତରୁଣ ଦିନର
କେଳିକୁଞ୍ଜ ତୋ
ତନୁ କର୍ପୂର ରେଣୁ
ତୋର ବେଣୁବନ ବିତାନେ ମୁଁ ଆଜ
କ୍ଲାନ୍ତ ଦିବସ ଯାପନରେ ଉପଗତ ।

[ ୧୨ ]

ଭିକ୍ଷାଶୀ ପ୍ରାଣ ପୀଡ଼େ ମତେ ଅହରହ
ପାଥେୟ-ବିହୀନ ପଥିକ ମୁଁ ମଣେ
ଯାତ୍ରା ଏ ଦୁରୁବହ,
ଖଇ ଓ ତୂଳାରେ ଶୁଭ୍ର କରି ତୋ ତନୁ
ରାମ ନାମ ସତ ମନ୍ତ୍ରେ ଚଳିବି
ତୋ ଶିର ଶମଶାନେ
କେବେ କହ, କେବେ କହ ?

□□□

# ଛୁଟିର ଖବର

ଗୁରୁପ୍ରସାଦ ମହାନ୍ତି

ପାଚୁଡ଼ା ଧାନର ଗେୃପା ଛୁଇ ଯାଏ ଆକାଶ ଆକାଶ
ହଳଦିଆ ସୋରିଷ କିଆରି
ଅଶ୍ୱତ୍ଥ ଗଛର ଖବର, ନଙ୍ଗୁଟିଆ ଖଜୁରି ଗଛରେ
ପାଚୁଡ଼ା ଧାନର ଗେୃପା ଆକାଶର ଏପାରି ସେପାରି ।
ନରମ ଆକାଶ ଆଉ ନାଲି କଇଁ ଶୁନ୍‌ଶାନ୍ ବେଣା ବାଲିଚର
ନଙ୍ଗୁଟିଆ ଜୋର ପାଣି ନଙ୍ଗୁଟିଆ ନେଳି ଶିଉଳିରେ
ହଳଦିଆ ଏହି ଦ'ପହର ।

କ୍ଳାନ୍ତି ମୋର ଧୋଇଯାଉ ନଙ୍ଗୁଟିଆ ନରମ ଖବରରେ
ଡାହୁକ ଡାକର ଖବର, ନାଲି ନାଲି ବରଫଳ
ବେତକୋଳି ଖଜୁରି କୋଳିର
ଅଚଡ଼ାର ଖଣା ଖାଲି ଆଉ ଧଳା ବାଲିଚର ଖବର
ଦେହ ମୋର ଧୋଇଯାଉ ଘାସ ଆଉ ଆଖିପତା ନରମ ଖବରରେ ।

ପାଚୁଡ଼ା ଧାନର ଗେୃପା ଛୁଇଯାଏ ଆକାଶ ଆକାଶ···
ଛୁଇଯାଏ ଆକାଶରେ କାଚ ଆଉ ଚକ୍‌ଚକ୍ ଜରିର କାଗଜ ।
ଦୋକାନର ଷାହାଟରେ ଜରି ଆଉ କାଗଜର ଖବର
ତୁମର ଓ ମୋ ଭିତରେ ଚା', କଫି, କାଚ ଗ୍ଲାସ୍
ଟ୍ରେଠ ଟ୍ରେଠ ଟମ୍ବୁର୍‌ରେ ଆଶଙ୍କା ଓ ଅବଶୋଷ
ଜୀବନର କ୍ଳାନ୍ତି କେତେ କାରୁଣ୍ୟ ଓ ପ୍ରାଣର ଦରଜ ।

ତୁମର ମନର କ୍ଳାନ୍ତି ଆଜି ଯଦି ଧୋଇଯାଏ ଟେବୁଲ୍‌ର
ନରମ ଖବରରେ
ହଳଦିଆ ଚା' କଫି ସରବତ୍ ଦୋକାନ ଖବରରେ

ଆମର ଏ ବାଟଚଲି, ପୂଜାଛୁଟି ଖବରୁଟି ଗୋଟି ଗୋଟି ରବିବାର
ଅସରନ୍ତି ଖବ ଆଉ ଦ'ପହର ଅବସନ୍ନ ଆସକ୍ତି ଭିତରେ
ହୁଏତ ତୁମେ ଓ ମୁଁ ପ୍ରାଚୀନ ଏ ପୃଥିବୀର ପ୍ରାଚୀନ ଏ ଦିଗନ୍ତ ଉପରେ
ପ୍ରାଚୀନ ଖବର ବାଟ ଚହ୍ଲିପାର ଆପଣାର ଦିଗ;
ଆପଣାର ବାଟ ପୁଣି ପାଇବୁ ହଠାତ୍ ଫେର···
ନରମ ଖବର ମେଘ···
ଧାନର ନରମ ଖବ···
ଜୀବନର ହଳଦିଆ ଗ୍ଲେଟ ଗ୍ଲେଟ ମୁହୂର୍ତ୍ତର ଆକସ୍ମିକ ନରମ ଦେହରେ ।

ପାଚୁଡ଼ା ଧାନର ଫେପା ଗୁଇଯାଏ ଆକାଶ ଆକାଶ
ଡାହୁକ ଡାକର ଖବ ନଗ୍ଣଟିଆ ବାଲଚର ଖବ
ଆଜ ଚେଣୁ ଡାକନଏ ସହରର ରେଲ୍ ପୋଲ ଡେଇଁ
ତୁମକୁ ଛୁଟିର ଖବ ଝଡ଼ା ପତ୍ର ବାଲଚର ଖବ ।
ନୁପ୍‌ଗୃପ୍ ବାଲଚର, ଗାଁ ସ୍କୁଲ୍, ଡାକପିଅନ ସାଇକଲ ଘଣ୍ଟି
କେଉଟ ସାଇର ଢିଙ୍କି ଚୁପ୍‌ଗୃପ୍, ଲୁଗାନାହିଁ ଧୋବାତୁଠ ଆଡ଼େ
ଗୁ ଚୁବାର ଚଚା ନାହିଁ ମାଣବସା ହୁଳହୁଳ ସନ୍ଧ୍ୟାତୁଣୀ ଶାଶୁବୋହୂ କଳି
ଶୁନ୍‌ଶାନ୍ ତୁମ ଗାଁଆଁ, ଆମ ଗାଆଁ
ବିଷଣ୍ଣ ଏ ଶ୍ରୀହୀନ ଖବରେ ।
ହଳଦିଆ, ଦ'ପହର, ବୋରଝାଙ୍ଗି, ଶିଉଳର ଖବ
ନଗ୍ଣଟିଆ ନହଣର ଗେଣ୍ଡାଳିଆ, ଘାସ ଆଉ ନରମ ଆକାଶ
ପାଚୁଡ଼ା ଧାନର ଫେପା ଉଡ଼ିଗଲା ଆକାଶ ସେପାର
ତୁମର ଓ ମୋର ଏହି ଘ', କପି ଶୋଷ ଆଉ
ପୂଜାଛୁଟି ଖବରୁଟି
ଅନ୍ତଃସାରଶୂନ୍ୟ ଏହି ନଗ୍ଣଟିଆ ଖବ ଓ ଆକାଶ ।

□□□

# ଶାନ୍ତି ସମାଚାର

ଡକ୍ଟର ଜାନକୀବଲ୍ଲଭ ମହାନ୍ତି

ବିପୁଳ ଏ ଧରିତ୍ରୀର ଦେଶେ ଦେଶେ ବିସ୍ତାରି ଦିଗନ୍ତ
ପରିବ୍ୟାପ୍ତ ଶ୍ୟାମ ଶସ୍ୟ କ୍ଷେତ୍ର ।
ଗହମ ଓ ଧାନ୍ୟ
କାହିଁ ବା ଖର୍ଜୁର କାହିଁ ଅଙ୍ଗୁର ଉଦ୍ୟାନ ।
ବିକମ୍ପିତ ତୃଣପୂର୍ଣ୍ଣ ଚାରଣ ପ୍ରାନ୍ତରେ
ଅଗଣିତ ଦୁଗ୍ଧବତୀ ଗୋମାତା ବିଚରେ
ତଥାପି ଏ ସର୍ବଂସହା ଧରିତ୍ରୀର କୋଳେ
କ୍ଷୁଦ୍ର ଏ ମାନବ ଶିଶୁ
ଦେହେ ହିଂସା କଳେବରେ
ସିକ୍ତ କରେ ଧରଣୀର ସୁପବିତ୍ର ଧୂଳି
ଉଷ୍ଣ ରକ୍ତ ଢାଳି
ଧୂମ୍ର ବାଷ୍ପେ ଭରି ଜନପଦ
ନିତ୍ୟ ଧର୍ମ ମୁଖେ ବୋଳି ମସୀ
ଗରଜେ କମାଣ ତାର
ହସିଉଠେ ଶାଣିତ ତା ଅସି ।
ଧରଣୀର ଶସ୍ୟ ଫଳେ
ସ୍ୱର୍ଣ୍ଣ-ରତ୍ନେ ସାଗରେ ସରିତେ
ସବୁରି ଯେ ସମ ଅଧିକାର
ବାଜେନା କି କାନେ କାର
ଏ ଶାଶ୍ୱତ ଶାନ୍ତି-ସମାଚାର ?

□□□

# କିଛି ପ୍ରଶ୍ନ ଅନେକ ନୀରବତା

ଡକ୍‌ଟର ଗୋପାଳଚନ୍ଦ୍ର ମିଶ୍ର

ଆକାଶକୁ ଯେତେବେଳେ ଆଖି ଫେରାଇଲି ଅନ୍ଧାର ରାତିରେ
ଅଧା ଝୁଲି ଅଧା ମୂର୍ତ୍ତି ଅସହାୟ ଚେତନାର ପାଖେ ପାଖେ ରହି
ମୁଁ ଦେଖିଲି ଆକାଶଟା ଯାହା  ହେବାକଥା ନକ୍ଷତ୍ରର ଇଲାକାରେ
ସେମିତି ହୋଇଛି ବେଶ ଏହି କେତେ ଯୁଗ ସମୟ ଭିତରେ
ଆକାଶର ତାରା ସବୁ ଅଗଣିତ ଶଙ୍କ ପ୍ରେମ ଚିଠାଉର
ମେଘମାନେ ଚିଠାଉର ଆବରଣ ଖୋଳି ଉଡ଼େ ପବନରେ
ଆକ୍ରାନ୍ତ ଜୀବନର ସବୁ ବୋଝ ବହି  ଆକାଶକୁ ଚାହିଁ
ମୁଁ ଦେଖିଲି ଆକାଶଟା ମୋ ସମାନ ଅତି ଅସହାୟ ।

ପଚାରିଲି, ହେ ଆକାଶ, ତେବେ ମୋହ ପାଇଁ ତୋର ବାର୍ତ୍ତା କ'ଣ ?
ଅନ୍ଧାରର ନିର୍ଜନତା, ଆଲୋକର ସୂର୍ଯ୍ୟ, ତା'ର  ସରାଗ ମୁହୂର୍ତ୍ତ,
ତୁ କ'ଣ ଏମିତି ସତେ ସବୁଦିନେ ଥିବୁ ଆକାଶ ନାମରେ
ଆମ୍ଭେମାନେ କ'ଣ ଏହି ମାଟି କୁଡ଼ିଆରୁ ତୋତେ ଚାହିଁ ଥିବୁ
ଆମ୍ଭମାନଙ୍କ ହାତ ସବୁ ଖାଲି ଥିବ ତୋର ସାମ୍ରାଜ୍ୟରେ ?

ତୁ ତ କେବେହେଲେ ଥରେ କହିଲୁ ନାହିଁ ଯେ ସମୟ ହେଲାଣି
ଆଉ କେତେ ଯୁଗ ଧରି ଋଷୀମାନେ ପିଟୁଥିବେ ମାଟି ଓ ପଥର
ତୁ କ'ଣ ଭାବୁଛୁ, ଖାଲି ପଥର ହାଣିବା ଜୀବନର ମନ୍ତ୍ର;
ଏହି ଯେ ସମସ୍ତହୀନ ଶତାବ୍ଦୀ ଶତାବ୍ଦୀ ପ୍ରତିବାଦ ଜନ୍ମ ନଏ ।
ହେ ଆକାଶ, କହ ତେବେ ଏହି ସମୟର କେଉଁଠାରେ ସ୍ଥାନ ?

ଏହି ସମୟର ଲକ୍ଷ୍ୟ ତା'ର ସ୍ୱପ୍ନ କବା, କେହି  ଜାଣେ ନାହିଁ
ମଣିଷ ଦେହରେ ଦେଖ ଜମିଅଛି ଏତେ ଅପର୍ଯ୍ୟାପ୍ତ ଧୂଳି
ମଲି ଓଟର କଙ୍କାଳ ପରି ଆମ୍ଭେମାନେ ଭାରବୁହା ଜୀବ

ଅଦୂରରେ ନଈପଠା, କାଶତଣ୍ଡି, ଗୋପପୁର ଗାଈ ଜଗୁଆଳି
ନିକଟରେ ନଦୀ ଦେହେ ଭାସି ବୁଲେ ଅସହାୟ ପ୍ରବାହର ତରୀ
ଏଠି ବସି ସମୟର କନାରୀ ଦେହରେ ଲାସ୍ୟମୟୀ ରୂପବତୀବାଳା
ବାରମ୍ବାର ଉଲ୍ଲାହରେ ନଈ ଭୁଠେ ପୂର୍ଣ୍ଣିକରେ ଗାଗରୀ ତାହାର
ଚମ୍ପାଫୁଲ ପାପୁଡ଼ିରେ ତା'ର ଭରିଅଛି ପିପାସାର ଏତେ ଏତେ ରଙ୍ଗ
ସମୟର ଚଉରାରେ ଗାଆଁ ଝିଅମାନେ ଦେଉଛନ୍ତି ଆଞ୍ଜୁଳା ଆଞ୍ଜୁଳା ଫୁଲ
ହେ ଆକାଶ, ତୋର ସେହି ସାଂପ୍ରତିକରୀ ମେଘ ଆଉ ମେଘର କବରୀ
ନଈପଠା, କାଶତଣ୍ଡି, ଗୋପପୁର ସବୁକିଛି ଆଚ୍ଛାଦିତ କରି ରଖେ ।

ହେ ଆକାଶ, ପୃଥିବୀର ଏହି ଶିହ୍ଲା ଅଶିହ୍ଲା ଦେହଟା ଉପରେ
କେତେ କାଳୁ ତୁମର ଯେ ଲୋଭ ତାହା ମୁହିଁ ଜାଣିପାରୁନାହିଁ ।
ଅସରନ୍ତି ଚିଡ଼ିଘର ସବୁ ତୁମ ସାମ୍ରାଜ୍ୟର ମିଳନ ଶିହ୍ଲଟ
ତୁମ ଦେହ ନିର୍ଜନତା ଗ୍ରାସ କରି ଶୁଖଥାଏ ପୃଥିବୀବାସୀଙ୍କୁ
ଆଉ ଆମ ବଗିଚାର ଫୁଲ କଡ଼ ହଜଯାନ୍ତି ତାହାର ରଙ୍ଗରେ
ସମୁଦ୍ରର ଗଭୀରତା ଠାରୁ ବଳି ଏହି ଆକାଶର ଗଭୀରତା
ସମୁଦ୍ରକୂଳିଆ ଲୁଣି ପାଣି ଫେନ କିଆବାଡ଼ ସବୁ ଆକାଶର ବର୍ଣ୍ଣ
ହେ ଆକାଶ ତୁମ ନିଦ ଭୁଲେ ସନ୍ଧ୍ୟା ଆସେ ଆଉ ଯାହାନ୍ତା ହଜଇ
ଆକାଶ ପିଠିରେ ଥରେ ହାତ ମାରି ଅରଣ୍ୟର ପକ୍ଷୀ ଉଡ଼ିଯିବା ଭଳି
ମୁଁ ଦେଖୁଛି ମୋ ମନର ଅଶ୍ୱ ସବୁ ବ୍ୟସ୍ତ ହେଉଛନ୍ତି ଗାଡ଼ି ଟାଣିବାକୁ
ସମୁଦ୍ରକୂଳିଆ ଗଛଲଟାମାନଙ୍କରେ ସାବୁନର ଫେଣ
ସମୁଦ୍ର ଗର୍ଭକୁ ଶୁହିଁ ହେ ଅର୍ଜ୍ଜୁନ ଫିଙ୍ଗିଦେଲ ଶର ଓ ତୂଣୀର
ସେଥିରେ କି ସମୁଦ୍ରର କମ୍ପା ଆକାଶର ତୃଷ୍ଣା ହେଲା ଶାନ୍ତ
ଅଧାମାଟି ସମୁଦ୍ରର ମୁହାଣରେ ଝାଉଁବଣ ଏକମାତ୍ର ସାକ୍ଷୀ
ସଂଖ୍ୟାଧିକ ବର୍ଷ ପରେ ବେଳା ବନ ଦର୍ପଣରେ ମୁହଁ ଦେଖେ
ଏହି ମୋର ଅସହାୟ ଆତ୍ମା ରୂପ ଭଦଭଦଳିଆ ପକ୍ଷୀ ।

ହେ ଆକାଶ, ତୁମକୁ ଯେ କେତେ ପ୍ରଶ୍ନ କେଉଁ ଯୁଗୁ ପଚରାଯାଇଛି
ପ୍ରତ୍ୟୁତ୍ତର ମାଗିଛନ୍ତି ଆର୍ତ୍ତ ମନ ପ୍ରାଣେ କେତେ ବିବସ୍ତ୍ର ଦ୍ରୌପଦୀ
ପ୍ରତ୍ୟୁତ୍ତର ମାଗିଛନ୍ତି ସୀତା ଠାକୁରାଣୀ ଅଶୋକ ବନରୁ

ପ୍ରତ୍ୟୁତ୍ତର ମାଗିଛନ୍ତି ନିରପରାଧିନୀ ନିଷ୍ପାପା ଅହଲ୍ୟା
ଯମୁନା ନଦୀର କୂଳେ ବାସଚ୍ୟୁତ ସେହି ଗୋପାଙ୍ଗନାମାନେ;
ଆଉ ପ୍ରତ୍ୟୁତ୍ତର ମାଗିଥିଲେ ପଞ୍ଚବଟୀ ସୀମା ପାରେ ଜଟାୟୁ ବିହଙ୍ଗ
ସମୟର ଅଶ୍ୱମାନେ ଅନ୍ଧ ପାଲଟନ୍ତି ଧାଇଁ ଧାଇଁ ଆଗକୁ ଆଗକୁ ।
ହେ ଆକାଶ ଥରେ ହେଲେ ଶୁଣ ମୋତେ, ଥରେ ହେଲେ ମୋତେ ନିଦାଘର
ମୁଁ କପର ଏକ ଶ୍ରେଷ୍ଠ ଦୁବଘାସ ଶେଚା ଶେଚା ମୋର ଦେହ
ମୁଁ କପର ଯାହାବରେ ପ୍ରତି କ୍ଷଣେ ସଂଗ୍ରାମ ନିରତ
ମୋ ଶୁରପଟେ ଖାଲି ସେହିମାନେ ମରୁଡ଼ିପୀଡ଼ିତ ଛେଳି
ମୁଁ କେବଳ ଶୁଣିଁ ରହେ ହେ ଆକାଶ ତୁମକୁ ଦଗ୍ଧ ଶାମୁକା ପରି
ନା ତୁମେ ଦେଇଛ ମୋତେ ଥରେ ହେଲେ ପ୍ରାବୃଟର ପ୍ରତିଶ୍ରୁତି,
ଏଠି ଏହି ବାଲୁକାର ସମୁଦ୍ରପ୍ରାନ୍ତରେ ଆତ୍ମା ମୋର ଜଳିଯାଏ
କାହିଁ ମୋତେ ଦେଖାଯାଏନାହିଁ, ମୋ ପାଇଁ ଆସୁଥିବା ଜାହାଜ ମାସ୍ତୁଲ ।

ହେ ଆକାଶ, ତୁମକୁ ମୁଁ ଆଉ କେତେ ପ୍ରଶ୍ନ ପଚାରିବି ସତେ,
ଦୁନିଆରେ ଯେତେବେଳେ ଗାଆଁ ଝିଏ ଶୁଳିଛନ୍ତି ତାଡିଲି ବାଲିରେ
ସବୁରି ଗାଗଣ ଶୂନ୍ୟ, ସମସ୍ତଙ୍କ ଧୂଙ୍ଗୁର ନିଃଶବ୍ଦ
ସମସ୍ତଙ୍କ ଦେହ ଖାଲି ପରିତ୍ୟକ୍ତ ଗୋଲପର କଣ୍ଟା
ଯାହାର ଆଘାତ ଲାଗି ଆତ୍ମାର ଘରଚଟିଆ ଝରାଏ ଶୋଣିତ
ଯେଉଁ ରକ୍ତ ଛିଟା ଲାଗି ସମସ୍ତଙ୍କ ଆତ୍ମା ହେଉଛି ଲୋହିତ,
ହେ ଆକାଶ, ତୁମେ ସତେ ମହାଭାରତ ଯୁଦ୍ଧର ଗୋଟାଏ ମୁହୂର୍ତ୍ତ
ତୁମର ସାରଥି କୃଷ୍ଣ ଜଗି ରହିଛନ୍ତି ତୁମ ଅର୍ଜ୍ଜୁନ ଆତ୍ମାକୁ ।

□□□

# ନିଶୀଥର ଗୀତ

ଶ୍ରୀ ବେଣୁଧର ରାଉତ

ଯେତେବେଳେ ଏ ଧରଣୀ ଶୋଇପଡ଼େ ତୁନିତାନି ଗହନ ନିଦରେ
ନିଜକୁ ହଜେଇଦେଇ ଘନୀଭୂତ କଳାର ଗହନେ,
ନିଜର ହଜେଇଦେଇ ସଚେତନ ସମଗ୍ର ଅସ୍ମିତା
କେବେ ଅବା ଜ୍ୟୋତ୍ସ୍ନା ଇନ୍ଦ୍ରଜାଲେ,
—ସ୍ୱପ୍ନପରି ଆଙ୍କି ହୁଏ ଆକାଶର ପଟେ
(କେବେ କେବେ ଚନ୍ଦ୍ରଛଟା)
କିନ୍ତୁ ତାର ପଦାବଳି, ଚକ୍ରବାଳ କାଳିମାର ଅସ୍ପଷ୍ଟ ଅରଣ୍ୟେ,
ନିଶୀଥର ଗୀତ ହୁଏ ଉଚ୍ଛ୍ୱସିତ ସଂପ୍ଲାବିତ ପ୍ରାଣର ପ୍ରାନ୍ତରେ ।

ନିଶୀଥ ଗାଇବା ଗୀତ—ନେଳି ନେଳି, ମିଠା ମିଠା ଗୀତ
(ତୁମେ ଶୁଣ ଅବଚେତନରେ)
ଆକାଶରୁ
ବ୍ୟଥାକ୍ରାନ୍ତ ଅଶ୍ରୁପରି ତୁଷାର କଣରେ
ଝରୁ ଝରୁ
ନିଷ୍ଫଳ କାମନାବାହ୍ନି ମୃତକଳ୍ପା ଏ ମାଟିରେ ଅମୃତ ଇଙ୍ଗିତ,
ନିଭୃତ ସ୍ୱାନ୍ତରେ ଭରା,
ଗୀତିମୟ
ନୂଆ ଏକ ସୃଜନର,
ପ୍ରୀତିମୟ
ନୂଆ ଏକ ଜୀବନର
ନିରୁକ୍ତ କାନ୍ତରେ ନୀଳ ଆଲୋକିତ ଜ୍ୟୋତିର ଅସର ।

ନିଶୀଥ ଗାଉଛି ଗୀତ; ବାର ବାର ଘୋଷା ଆଳାପୁଛି,
ଯାବତ ବିଭେଦ, ସ୍ୱାର୍ଥ, ପଶୁପଣେ ଏ ମଣିଷ ଜାତି

ଲଭୁଅଛି ପୁନରପି ଧରଣୀର
ଅଚେତନା ତଳେ ତଳେ ଅମରାବତୀର
ସମାଚ୍ଛାର ମିଠା ମିଠା ମେଞ୍ଜା ମେଞ୍ଜା ଛାଞ୍ଚ ।
ଏ ନଦ ଵଲୟ ଭଜୁ ।
ଵଷାକ୍ତ ଏ ମଣିଷର
ଏ ନଦେ ଵଲୟ ଭଜ—
ପଶୁଗ୍ରସ୍ତ ମାନସର
ବକ୍ତ୍ରରେ ଯେ ଅନାହତ, ନଦର ଏ ସମୁଦ୍ରର ଫେଣରେ—ନମୁଚ ।
ହୁଅନ୍ତ କ ସ୍ୱାତୀ ଅବା ଅନୁରାଧା ଶୁଣନ୍ତ ମୁଁ ନଶୀଥର ଗୀତ
ସନ୍ତୋଷିତ ନର୍ଜନ ହସରେ
ହୁଅନ୍ତ ବର୍ଷାର ମାପ
ଗୀତର ଗନ୍ଧର ସୁଖେ ରୋମାଞ୍ଚରେ ଭରନ୍ତ ଏ ଚିତ୍ତ ;
ହୁଅନ୍ତ ମୁଁ ଦୂର୍ବାଦଳ ସମ୍ବେଦିତ ନବଢ଼ ପ୍ରାସରେ
ବହନ୍ତ ଅଶ୍ରୁର ଜାଳେ ଜ୍ୱାଳାମଧ୍ୟ
ଅନାଗତ ଅମୃତର ଏକାନ୍ତ ସମୀପ
ହୁଅନ୍ତ ମୁଁ ନବବଧୂ,
ମଙ୍ଗଳ କଲ୍ୟାଣ ରାଗେ ନଶୀଥର
ଜୀବନର ଅନୁରାଗେ ଥରି ଥର
ହୁଅନ୍ତ ବେପଥୁ ଭାରେ ପ୍ରତ ପ୍ରାଣେ ପ୍ରୀତିର କାମିନୀ,
ହୁଅନ୍ତ ଅଶୋକ ତରୁ
ଶୁଣୁ ଶୁଣୁ ନଶୀଥର ଆଶାବରୀ,
ନୂଆ ଏକ ଜୀବନର ଅଶା କର
ହଅନ୍ତ ବାଲ୍ମୀକ ଜନ୍ମ ଏ ଅନ୍ତରୁ—
ଗାଆନ୍ତା ସେ ମାଙ୍ଗଳିକ ନୂଆ ଏକ କଳପିତ ଶ୍ଳୋକେ,
ପ୍ରୀତି ସମାମ୍ନାର ଏକ ଆଗାମୀ ଆଲୋକେ;
ନଭୂ ଏ ନଶୀଥ ଗୀତେ ମଣିଷର ଚେତନାର ଵଷାକ୍ତ ଯାମିନୀ ।

□□ଭ

# ଶୟତାନ୍ ପାଇଁ ଗୋଟିଏ ସ୍ତୁତି

**ଚନ୍ଦ୍ରାମଣି ବେହେରା**

ମୋର ଅସ୍ଥି ପଞ୍ଜରାକୁ ହାତୁଡ଼ିର ନିର୍ମମ ପ୍ରହାରେ ଚୂର୍ଣ୍ଣ କରି
ତାର ନିର୍ଯାସରେ ସୃଷ୍ଟି କରେ ମୌନ ଆତ୍ମାର ଯେ ସ୍ତବ୍ଧ ସଙ୍ଗୀତ
ଦୁଷ୍ଟ ଗ୍ରହର ଅଧିବାସୀ ସେଇ କୁତ୍ସିତ ଶିଳ୍ପୀ ଶୟତାନ୍‌କୁ ମୋର ପ୍ରଣାମ ।

ସେ ଶୟତାନ୍ ମୋର ଆଖି ଅଶ୍ରୁକୁ ବୀଭତ୍ସ ଆନନ୍ଦରେ ସୁରା ଭଳି ପାନ କରି
ନିର୍ଲଜ ଉନ୍ମାଦନାରେ ମୋର ରକ୍ତାକ୍ତ କ୍ଷତ ଉପରେ ଫୁଟାଏ କଣ୍ଟକିତ
ଗୋଲାପ

ସେ ଶୟତାନ୍‌ର ଶିଳ୍ପକୃତିଗୁଡ଼ିକୁ ମୋର ଧନ୍ୟବାଦ ।

ଯେ ଶୟତାନ୍ ତା'ର ହିଂସ୍ର ନଖଦନ୍ତରେ ମୋର ଅସହାୟ ଶରୀରକୁ ବିଦୀର୍ଣ୍ଣ କରି
ମୋହର ରକ୍ତରେ ହୋରି ଖେଳ ଉନ୍ମତ୍ତ ଭାବରେ ସୃଷ୍ଟି କରେ ଆକାଶରେ
ଇନ୍ଦ୍ରଧନୁର କବିତା

ସେ ଶୟତାନ୍‌ର କାରିଗରୀ ମୋର କାମ୍ୟ ।

ନିର୍ଜୀବ କ୍ରୀଡ଼ନକ ପରି ଯେ ଶୟତାନ୍ ମୋତେ ହାତରେ ଧରି ସ୍ୱର୍ଗନର୍କରେ
ନଚାଇ ବୁଲେ

ମୋହର ସ୍ୱପ୍ନରେ ସୃଷ୍ଟି କରେ ଆକାଶର ଅଗଣିତ ତାରକା
ମୋହର ପ୍ରବୃତ୍ତିରେ ରଚନା କରେ ଅନ୍ତହୀନ ପାତାଳର ବିଚିତ୍ର ବର୍ଣ୍ଣୋତ୍ସବ

ସେ ଶୟତାନ୍‌କୁ ମୋର ସ୍ୱାଗତ ।

ମୋହର କରୁଣ କାତର ନିଃଶ୍ୱାସରେ ଯେ ରଞ୍ଜିତ କରେ ସନ୍ଧିର ଅନନ୍ତ
ଗଭୀର ରୂପ

ମୋର ଜୀବନ୍ତ ଶରୀର ଉପରେ ରଚନା କରେ ଯେ ଶ୍ମଶାନବାସୀ ଶିବ ଭଳି
ପ୍ରଳୟର ତାଣ୍ଡବ

ସକଳ ଅଶୁଭର ସ୍ରଷ୍ଟା ସେଇ ଶୟତାନ୍ ମୋର ଉପାସ୍ୟ ।

ଯେଉଁ ଶୟତାନ୍ ମୋର ସକଳ ସ୍ନାୟୁକୁ ଏକତ୍ରିତ କରି ପ୍ରସ୍ତୁତ କରେ
ତାର ବୀଣାର ତନ୍ତ୍ରୀ

ମୋତେ ନୀରବ, କରୁଣ ଓ ନିର୍ଜୀବ କରି ଖିଆଲି ଭାବରେ ତୋଳେ ତାର
ବୀଣାର ଝଙ୍କାର

ଯେଉଁ ଝଙ୍କାରର ମୂର୍ଚ୍ଛନାରେ ମୁଁ ଜନ୍ମନିଏ ହିରଣ୍ମୟ ସୂର୍ଯ୍ୟ ପରି
ଗଭୀର ତାମସୀ ରାତ୍ରି ର ଗର୍ଭରୁ

ସଫଳ ହୁଏ ମୋର ରାତ୍ରି ର ତପସ୍ୟା
ସେ ଶୟତାନ୍ ମୋର ସିଦ୍ଧିଦାତା ଦେବତା
ବିଚିତ୍ର କାବ୍ୟର ସ୍ରଷ୍ଟା ମୋର ନିଭୃତ ଆତ୍ମାର କାରିଗର ।

□□□

## ମୃତ୍ୟୁ ହେ ମମ !

ଶ୍ରୀ ବଭ୍ରୁଦତ୍ତ ମିଶ୍ର

୧

ଆସିବ ଯେଦିନ ମୃତ୍ୟୁ ହେ ମମ ! କରାଳ କେତନ ହାତେ
ଏଇ ଧରଣୀର ଧୂସର ସୀମାରେ ଦେଖାହେବ ତୁମ ସାଥେ
ଜୀବନର ସେଇ ମଧୁର ଲଗନେ
କି କଥା କହିବ ଏଇ କାନେ କାନେ,
ଭୁଲେଇ ଭଳେଇ, ସାଥେ ତୁମ କ'ଣ ଡାକିନେବ ସତେ ମୋତେ
ଆସିବ ଯେଦିନ ମୃତ୍ୟୁ ହେ ମମ ! କରାଳ କେତନ ହାତେ ।

୨

ପଡ଼ି ତ ରହିବ ପ୍ରିୟ ପରିଚିତ, ସବୁଜ ସପନ ଶିରୀ
ପ୍ରିୟାର ପୀରତି, ଶିଶୁର ମମତା, କେତେ ଅଳି ଅରଦଳି
କେତେ ଯୁଦ୍ଧର ବିଜୟର ଟୀକା
ଶତ ପରାଜୟ ମ୍ଲାନିମାର ରେଖା
କେତେ ସଖା ସାଥୀ କେତେ ପ୍ରତିବାଧା ସବୁ ଛାଡ଼ି ଯିବି ଚାଲି
ପଡ଼ି ତ ରହିବ ପ୍ରିୟ ପରିଚିତ ସବୁଜ ସପନ ଶିରୀ ।

୩

ସେଦିନ ତାରିଖ, ତିଥି, ବାରବେଳା ତୁମକୁ ବା ଥିବ ଜଣା
ହଠାତ୍ ସତେ କି ହାବୋଡ଼ି ଯିବ ହେ ନ ଦେଇଣ ପରୱାନା
ଅଧା ଥିବ କେତେ କବିତାର ଲେଖା
ପ୍ରିୟଜନ ସାଥେ ନୋହିଥିବ ଦେଖା
ସମୟ କି ଟିକେ ଦେବ ନାହିଁ ଆଉ ସାରିବାକୁ ଦେଣା-ନେଣା
ସେ ଦିନ ତାରିଖ, ତିଥି, ବାରବେଳା ତୁମକୁ ବା ଥିବ ଜଣା ।

୪

ଜୀବନର ପଥେ କେତେ କାହା ସାଥେ ପରିଚୟ ଥିଲି ହୋଇ
କେତେ ନରନାରୀ, ପୀରତି ଭିକାରୀ, ସାଥେ ପ୍ରାଣ ଦିଆଦେଇ
ସେ କିଏ କିଶୋରୀ ମାଳ ଦେଲି ଗଲେ
ଲୋତକ ଢାଳିଲି ମୋ' ଲାଗି କରେ଼ଲେ
ଶେଷକଥା ପଦେ କହିବାକୁ ତା'ରେ ସମୟ କି ଦେବନାହିଁ ?
ଜୀବନର ପଥେ କେତେ କାହା ସାଥେ ପରିଚୟ ଥିଲି ହୋଇ ।

୫

ତୁମ ଆଗମନେ ବରଷେ ଲୋତକ ବିଦାୟର ବୀଣା ବାଜେ
ପରାଣେ ଫୁଟଇ ବେଦନା କୁସୁମ କରୁଣ କେତନ ରାଜେ
ତୁମେ ଅସ୍ଥିର ତୁମେ ଦୁର୍ଗମ
ତୁମେ ନିଷ୍ଠୁର ତୁମେ ନିର୍ମମ
ହୀରାର ପାଚେରୀ, ଲୁହାର ଦୁର୍ଗ ତୁମର ପରଶେ ଭାଜେ
ତୁମ ଆଗମନେ ବରଷେ ଲୋତକ ବିଦାୟର ବୀଣା ବାଜେ ।

୬

ବିଜୟୀ କେତନ ଗର୍ବେ ଉଡ଼ାଇ ଦର୍ପେ ଚରଣ ଗୁଳି
ଶତ ବନ୍ଧନ ବାଧା ବିଘ୍ନରୂପ ପଦାଘାତେ ତବ ଠେଲି
ତୁମେ ଆସି ଦିଅ ଅଗ୍ନିକ ଦେଖା
ପରାଜୟ ତୁମ ଭାଲେ ନାହିଁ ଲେଖା
ନ ନେଇଣ ସାଥେ କାହାକୁ ତ କେବେ ତୁମେ ଯାଇନାହିଁ ଫେରି
ବିଜୟୀ କେତନ ଗର୍ବେ ଉଡ଼ାଇ ଦର୍ପେ ଚରଣ ଗୁଳି ।

୭

ଆଜିର ଏ ମାନ ଗଉରବ ଗାନ ଯଶ ସମ୍ପଦ ଶିଖା
ଯୌବନର ଏ ଦୁର୍ବାର ଦାନ ପୀରତିର ଆଶାବିଶ୍ୱ
ଏ ମାଳ ନୟନେ କବିତାର ଛଟା
ଭାଷା ଭାଷଣର ଯେତେ ଘନଘଟା
ପରଶେ ତୁମରି ଅବଶ ପାଲଟି ସତେ ଯିବ ଦିନେ ଝରି
ଆଜିର ଏ ମାନ ଗୌରବ ଗାନ ଯଶ ସମ୍ପଦ ଶିଖା ।

୮

ଏଇ ଦର୍ପିତ ଉଦ୍ଧତ ଶିରେ ତୁମରି ଆଘାତ ବାଜି
ପଲକେ ମାତର କାଚ ଗମ୍ବୁଜ ପରି ଏ ପଡ଼ିବ ଭାଜି
ଶିରେ ଶିରେ ଶୋଣିତର ଗତି
ଥମିବ ନୟନୁ ଲିଭିଯିବ ବତି
ଚିତାନଳ ସାଥେ ଜଳିଯିବ ସିନା ସକଳ ସ୍ୱପ୍ନରାଜି
ଏଇ ଦର୍ପିତ ଉଦ୍ଧତ ଶିରେ ତୁମରି ଆଘାତ ବାଜି ।

୯

ତଥାପି ମରଣ ତୁମରେ ବରଣ କରିବି ପୁଲକ ଭରେ
ଆକୁଳ ଆବେଗେ ଜଡ଼ାଇବି ବୁକୁ ତୁମରି ବକ୍ଷପରେ
ତୁମେ ସୁନ୍ଦର ତୁମେ ଅଭିରାମ
ତୁମେ ମଙ୍ଗଳ ଚିର ପ୍ରିୟ ମମ
କ୍ଳାନ୍ତ ଜୀବନ ଶେଷେ ମୋ ଶୟନ କେବଳ ତୁମରି କୋଳେ
ତଥାପି ମରଣ ତୁମରେ ବରଣ କରିବି ପୁଲକ ଭରେ ।

□□□

# ନଚକେତା

ସୀତାକାନ୍ତ ମହାପାତ୍ର

ସଞ୍ଜରେ ଲଣ୍ଠନ ପାଖେ
ମୁହଁମାଡ଼ି ଶୋଇପଡ଼େ କ୍ଷୁଧା ଓ ଅଭିମାନରେ
ମୁଣ୍ଡ ରଖି ବହି ଆଉ ପାପୁଲି ଉପରେ,
କୁନି କୁନି ତାରା, ଅଗଣିତ ପ୍ରଜାପତି
ଗାଁମୁଣ୍ଡ ନଈ ଓ ସେ ନଈର ତରଙ୍ଗ ଲହରୀ
ଲୁଚକାଳି ଖେଳୁଥିଲେ
କଅଁଳ ନିଦ ଭିତରେ
ଝର୍କା କଡ଼େ ଡାକୁଥିଲେ ପୁଣି ଥରେ ଖେଳିବାକୁ
ଅଖଳା ଜହ୍ନ ରାତିରେ
ସାଇର ଯେତେକ ସାଥୀ
ଝିଣ୍ଟିକା ପୋଷା ବିଲେଇ, ଶ୍ୟାମଳ ଅନ୍ଧାର ॥

ସେ କିନ୍ତୁ ଘୁମେଇଥିଲା
ଇତିହାସନସ୍ତ ଗ୍ରନ୍ଥୀଭୂତ
ନିଦରେ ଦୁର୍ବଳ ହାତ ପ୍ରସାରିତ ।
କଅଁଳ ଲଟାଟି ପରି ସୂର୍ଯ୍ୟଲେଖା
ଶକ୍ତିଲେଖା ସ୍ୱପ୍ନ ଅନିମେଷ
କପାଳରେ ସ୍ୱେଦବିନ୍ଦୁ ହଠାତ୍ ଝଲସିଉଠେ
ଅକଳନ ସମୁଦ୍ରର ଶୋଷ ॥

ଆକାଶକୁ ଲମ୍ବିଥିବା ମେଘଙ୍କର ପାହାଚରେ
ପାଦଶବ୍ଦ । ଦେବତା ଓହ୍ଲାଇଲେ କି ଯାଚିଦେବେ ବର
ଶୂନ୍ୟ ମାନ ହତାଶାରେ ସେ କିନ୍ତୁ ସ୍ୱପନ ଦେଖେ

ଜହ୍ନ ଲିପା ନଚିପର ଆକାଶରେ
ଶୋଇରହେ ଅସମାପ୍ତ ବେଦନାର ସ୍ୱର ॥

ମଳିନ ପୃଥିବୀ ଏମିତି ତ ସବୁକାଳେ
ତା' ସ୍ୱର ଚୋରେଇ ନିଏ ରଖିଯାଏ ଖାଲି ଅଭିମାନ
ପଥରକୁ ପଥରରେ ଘଷିବା ହିଁ ଯାହା କାମ ।
ପଦେ କଥା କହେ ନାହିଁ, ଝାଳ ପୋଛେ ପୁଣି ଘଷେ
ପ୍ରଜାପତି ଉଡ଼ୁଥାନ୍ତି ଅସୀମ ସମୁଦ୍ର କୂଳେ ସ୍ୱପ୍ନ ଅବିରାମ ॥

କେହି ଶୁଣନ୍ତିନି କାନ୍ଦ
ଲୁହ ମିଶେ ପଥରରେ
ଲୁହ ମିଶେ ସମୁଦ୍ରର ଲୁଣିଆ ପାଣିରେ
ମଝିରେ ସାଙ୍ଗପିଲାଏ ଆସିଯାନ୍ତି
କଳରୋଳ, ଅଭିଶାପ କାମ ବାକି ପଡ଼େ
ବାଲିରେ କୁନି ପିଲାଏ ଦଉଡ଼ନ୍ତି
ବୈକୁଣ୍ଠ ଓ ଦେବତାଙ୍କୁ ପଛ କରି
କି ବିଚିତ୍ର ପ୍ରଜାପତିଆଡ଼େ ॥

ନଖାଇ ପହଞ୍ଚିଯା'ନ୍ତି ଯମଘରେ
ଅଭିଶାପ କଥା ଭୁଲି, କ୍ଷୁଧା ଭୁଲି, ଭୁଲି ଅଭିମାନ
ସିଧା ସିଧା ଘରକୁ ନ ଫେରି
ବାଟରେ ସାଧବବୋହୂ ପ୍ରଜାପତି କଙ୍କି ଧରି ଧରି ॥

ଯମ ବି ଘରେ ନଥାଏ
କେତେ ନଷ୍ଟ ଘଷ୍ଟ କାମ ବିସ୍ତରର
ଦିନ ଦିନ ରାତି ରାତି ସାଙ୍ଗରେ ତାଲିକା ଧରି ବାହାରେ ବାହାରେ
ଫେରି ଦେଖେ ଅଖିଆ ପିଲାଗୁଡ଼ାକ
ଶୋଇଛନ୍ତି ବୋଧେ ପ୍ରଜାପତି ପରି ଭଙ୍ଗା ଚଟାଣରେ ॥

ସେମାନଙ୍କୁ ଚୂଡ଼ା ମୁଢ଼ି ଗଣ୍ଡେ ଦିଏ
ଓ କହେ ବାବୁରେ, ଏବେ ଯାଅ ଘରେ ଫେରି

ବେଳ ହେଲେ ମୁଁ ଯିବ ତୁମ ପାଖକୁ ଆଉ ଦିନେ
ଆଜି ଏଇ ଘର ବ୍ୟସ୍ତ
ବାପା ମା' ଖୋଜି ଥକିଲେଣି
ଦିନ ଥାଉ ଯାଉଛି ବାହାର ॥

ଲଣ୍ଠନଟି ଜଳି ଜଳି ନିଭିଯାଏ
ପିଲାଟିର ଶୁଭ୍ରନିଦ
ଫୁଲ ହୋଇ ଫୁଟୁଥାଏ ଶାନ୍ତ ଆକାଶରେ
ସକାଳର ପବନରେ ପୃଥିବୀ ଦିଶଇ ନୂଆ
ଅଗ୍ନିଶର୍ମା ଋତ୍ୱିକଙ୍କର କ୍ରୋଧ ଜଳି ନିଭିଥାଏ
ବାପା ଅଜାଙ୍କର ଭ୍ରାନ୍ତ ଅନ୍ଧାରର ଇତିହାସ
ସରିଆସେ ଶୁଚିମନ୍ତ ଉଷା ଆଲୋକରେ ॥

□□□